# ଗୁରେଇର ଚିଠି

(୨୦୨୦ର ଶ୍ରେଷ୍ଠ କବିତା ସଂଭାର)



-ସ୍ରଷ୍ଟା-

ମାଟିର କବି, ଲୋକନାଥ ମିଶ୍ର(ଭରଦ୍ୱାଜ)

| | |
|---|---|
| କବିତା ସଂଭାର | Kabita Sambhar |
| **ଗୁରେଇର ଚିଠି** | **GUREIR CHITHI** |



| | |
|---|---|
| **କବି** | **Poet:** |
| ଲୋକନାଥ ମିଶ୍ର | **Lokanath Mishra** |
| (ଭରଦ୍ୱାଜ) | Bharadwaj |
| ନିତ୍ୟାନନ୍ଦ ସାହି | Nityananda Sahi |
| ଓଡ଼ଗାଁ, ନୟାଗଡ଼ | Odagaon, Dist:Nayagarh |
| **ସମ୍ପର୍କ** | **Contact:** |
| ମୋ - ୮୧୪୪୩୯୨୯୫୧ | Mob: 8144392951 |





| | |
|---|---|
| **ପ୍ରକାଶକ:** | **Publisher:** |
| **ଶିଶିର କୁମାର ମିଶ୍ର** | **Sishir Kumar Mishra** |
| ଓଡ଼ଗାଁ, ନୟାଗଡ଼ | Odagaon, Nayagarh |
| **ମୁଦ୍ରଣ, ପ୍ରଚ୍ଛଦ, ପରିପାଟୀ** | **Printing, Cover Design:** |
| ଜଗନ୍ନାଥ ପ୍ରିଣ୍ଟିଙ୍ଗ୍ ପ୍ରେସ୍ | Jagannath Printing Press |
| ଶରଣକୁଳ, ନୟାଗଡ଼ | Sarankul, Nayagarh |
| ମୋ - ୯୮୫୩୨୫୨୮୪୩ | Mob: 9853252843 |
| **ପ୍ରଥମ ପ୍ରକାଶ** | **1ST EDITION:** |
| ୧୫ ଅଗଷ୍ଟ ୨୦୨୦ | 15 August 2020 |
| **ମୂଲ୍ୟ - ୧୫୦.୦୦** | **Price:** 150/- |
| (ଏକ ଶତ ପଚାଶ ଟଙ୍କା ମାତ୍ର) | (Rupees one hundred & fifty only) |







# ଆତ୍ମ କଥନ

କବିତା ହେଉଛି, - କବି, ତାର ନିଜସ୍ୱ ସ୍ୱତସ୍ଫୁର୍ତ୍ତ ଭାବରେ ଝରୁଥିବା ଅନ୍ତରର ଅଭିବ୍ୟକ୍ତି, ମନର ମର୍ମ୍ମଲିପି, ହୃଦୟର ଉଦ୍‌ବେଳିତ ଭାବାବେଗ, ଏହା ଲେଖା ଯାଏନା ଆପେ ଆପେ ଲେଖି ହୋଇଯାଏ ଯେତେବେଳେ ହୃଦୟରେ ଭାବର ଉଦ୍‌ବେଳନ ସୃଷ୍ଟି ହୁଏ। ଯେମିତି ଆଦିକବି ବାଲ୍ମିକୀଙ୍କ ମନରେ ହଠାତ୍ ସୃଷ୍ଟି ହୋଇଥିଲା। ତମସା ନଦୀ କୂଳରେ ଏକ ବୃକ୍ଷ ମୂଳରେ, ତପସ୍ୟାରତ ବାଲ୍ମିକୀ ଏକ ବକ ପକ୍ଷୀର କରୁଣ ଆର୍ତ୍ତ ଚିତ୍କାର ଶୁଣିବାରୁ, ହଠାତ୍ ଧ୍ୟାନ ଭଗ୍ନ ହେଲା, ଏବଂ ସମ୍ମୁଖରେ ଦଣ୍ଡାୟମାନ ଧନୁର୍ଦ୍ଧର ବ୍ୟାଧ ଓ ନିପତିତ ମୃତ ବକପକ୍ଷୀଣିକୁ ଅବଲୋକନ କରିବା ମାତ୍ରେ ଚକ୍ଷୁ ଲୋତକାପ୍ଲୁତ ଏବଂ କଣ୍ଠ ବାଷ୍ପରୁଦ୍ଧ ହେଲା। ହଠାତ୍ ତାଙ୍କର କଣ୍ଠରୁ ସ୍ଫୁରିତ ହେଲା ଏକ ଶ୍ଲୋକ -

ମା ନିଷାଦ ପ୍ରତିଷ୍ଠା ତ୍ୱମାଗମ ଶାଶ୍ୱତୀ ସମା,
ଯତ୍ କ୍ରୋଞ୍ଚ ମିଥୁନାଦେବକମବଧି କାମ ମୋହିତମ୍

କାମ ବିମୋହିତ ଥିବା ଦୁଇଟି ବକ ପକ୍ଷୀ ମଧ୍ୟରୁ ଯେହେତୁ ଗୋଟିକୁ ତୁ ବିନାଶ କରିଦେଲୁ, ରେ ନିଷାଦ, ରେ ବ୍ୟାଧ, ରେ ଶବର ତୁ ଅଳ୍ପାୟୁଷ ହୋଇଯାଅ। ଏହାଥିଲା ବାଲ୍ମିକୀଙ୍କର ପ୍ରଥମ ଶୋକରୁ ଶ୍ଳୋକ, ଯାହା ପୃଥିବୀର ପ୍ରଥମ କବିତା, ତେଣୁ ବାଲ୍ମିକୀ ପୃଥିବୀର ଆଦିକବି ହେଲେ। ସେହିପରି ଭାବାବେଗର ବଶବର୍ତ୍ତୀ ହୋଇ ମୁଁ କବିତା ଲେଖେ; -

ଜୀବନରେ ଯେବେ ଦୁଃଖ ଆସିଛି ମୋର,
କବିତା ମୁଁ ଲେଖେ ନୟନୁ ଝରାଇ ନୀର।
ମନାକର ପ୍ରିୟା କବିତା ଲେଖିବା ପାଇଁ,
କବି ଜୀବନରେ ସମୃଦ୍ଧି ଆସେ ନାହିଁ।
ଦୁଇ ସପତଣୀ ଲକ୍ଷ୍ମୀ ଆଉ ସରସ୍ୱତୀ

ଜଣେ ଧନ ଆନ ଅଟନ୍ତି ବିଦ୍ୟାଦାତ୍ରୀ ।
କବିମାନେ ସବୁ ସରସ୍ୱତୀ ପୁତ୍ର ଯେଣୁ
ବରଦା ନୁହଁନ୍ତି ଲକ୍ଷ୍ମୀ ସେମାନଙ୍କୁ ତେଣୁ ।
ମନାକର ବୋଲି ଲୁଚାଇ ତୁମକୁ ସେବେ
ଲେଖୁଥିଲି କିଛି କବିତା ମୁଁ କେବେ କେବେ ।
ଏବେ କିନ୍ତୁ ବସି ଲେଖୁଛି ସଦା କବିତା
ଲେଖୁଛି ଲେଖିବି ଜଳିବାଯାଏଁ ମୋ ଚିତା
ମନା କେ କରିବ ତୁମେତ ଯାଇଛ ଚାଲି
କବିତା ଲେଖିଲେ ଧନ ମିଳିବନି ବୋଲି ।
ନିସ୍ୱ ମୁଁ ଆଜି ତୁମକୁ ହରାଇ ପ୍ରିୟା
କବିତା ମୁଁ ଲେଖେ ହୃଦୟେ ମୋ ଜଳେ ନିଆଁ ।
ଲେଖିବି କବିତା ନମିଳୁ ପଛକେ ଧନ
ଲିଭିଯିବ ଅବା ଜଳୁଥିବା ହୃଦ ମନ ।

॥ ଇତି ॥

ରଚୟିତା

ପନ୍ଦର ଅଗଷ୍ଟ ୨୦୨୦



# ସୂଚୀପତ୍ର


| କ୍ର.ନଂ | ନାମ | ପୃଷ୍ଠା |
|---|---|---|
| **ପ୍ରଥମାର୍ଦ୍ଧ (କବିତା କଳ୍ପଲତା)** | | |
| ୧. | ଗୁରେଇର ଚିଠି | ୭ |
| ୨. | ବର୍ଷା ଗୋ ତୁମେ ଆସ | ୯ |
| ୩. | ଶ୍ୱେତ ଗୋଲାପ ଓ ବୁଲ୍‌ବୁଲ୍ | ୧୧ |
| ୪. | ମମତା ଓ ପ୍ରେମ/ମା ଓ ପ୍ରେମିକା | ୧୩ |
| ୫. | କାଶତଣ୍ଡିର ହସ/ମା ଆସୁଛନ୍ତି ବୋଲି | ୧୫ |
| ୬. | ସ୍ୱାଗତ ଓଡ଼ିଆ ନବବର୍ଷ | ୧୭ |
| ୭. | ଚନ୍ଦ୍ରସେଣା ଉବାଚ | ୧୮ |
| ୮. | ଶାସ୍ତ୍ରୀ ହେ ଗଲଚାଲି | ୧୯ |
| ୯. | ଦେଶ ମାତୃକାର ଆରାଧନା | ୨୧ |
| ୧୦. | ଯଉବନ | ୨୩ |
| ୧୧. | ପ୍ରକୃତି ଓ ପରିବେଶ | ୨୪ |
| ୧୨. | ନାରୀ ସୁରକ୍ଷା | ୨୬ |
| ୧୩. | ସକାଳ | ୨୮ |
| ୧୪. | ବିଧବାର ବିଳାପ | ୨୯ |
| ୧୫. | ଜାଗ ଭାରତର ବୀର ସନ୍ତାନ | ୩୦ |
| ୧୬. | ସ୍ୱାର୍ଥବାଦୀ/ସୁବିଧାବାଦୀ | ୩୨ |
| ୧୭. | ଲୋକହସା ଖାଲି ସାର | ୩୪ |
| ୧୮. | ମହାମନା ଦାସରଥି (ଦାସିଆ ଅଜା) | ୩୫ |
| ୧୯. | ମରିନାହିଁ ସେ ତ ମରିନାହିଁ | ୩୭ |
| ୨୦. | କଲେଜ ଛକର ଝିଅ | ୩୮ |
| ୨୧. | ମହାମାରୀ କରୋନା | ୪୦ |
| ୨୨. | ରଜା ପୁଅ, ରଜାଝିଅ ଓ ବୁଢ଼ୀ ଅସୁରୁଣୀ | ୪୨ |
| ୨୩. | ଘୋଷ ଯାତ୍ରା | ୪୫ |
| ୨୪. | ପୂଣ୍ୟ ନିଳାଚଳ | ୪୭ |

# ସୂଚୀପତ୍ର

| କ୍ର.ନଂ | ନାମ | ପୃଷ୍ଠା |
|---|---|---|
| ୨୫. | ଶ୍ରୀ ଚରଣେ ଦିଅ ଶରଣ | ୪୯ |
| ୨୬. | ନୟନେ ମୋ ନାଚୁଥାଉ, ତୋ ଚକା ନୟନ | ୫୦ |
| ୨୭. | ପରମ ବୈଷ୍ଣବୀ ଦେବୀ ବାସବୀ କନ୍ୟକା | ୫୧ |
| ୨୮. | କବିର ନାୟିକା | ୫୪ |
| ୨୯. | ଅନାବିଳ ପ୍ରେମ | ୫୬ |
| ୩୦. | ଅନ୍ୟ ଏକ ଲାବଣ୍ୟବତୀ | ୫୭ |
| ୩୧. | ଅଳି ଓ କଳି | ୫୯ |
| ୩୨. | ନିଆଁ ଜଳୁଛି | ୬୧ |
| **ଦ୍ୱିତୀୟାର୍ଦ୍ଧ - ସୃଷ୍ଟି ଓ ସ୍ରଷ୍ଟା** | | |
| ୩୩. | ଆଦିକବି ଶାରଳା ଦାସ | ୬୪ |
| ୩୪. | ଶ୍ରୀ ଗୀତ ଗୋବିନ୍ଦର କବି ଶ୍ରୀ ଜୟଦେବ | ୬୬ |
| ୩୫. | ନୟାଗଡ଼ ମଣି କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା | ୬୮ |
| ୩୬. | ଯୋଗ ଜନ୍ମା ପଠାଣୀ ସାମନ୍ତ | ୭୦ |
| ୩୭. | ଭକ୍ତ କବି ଭକ୍ତ ଚରଣ | ୭୨ |
| ୩୮. | କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ | ୭୪ |
| ୩୯. | ବ୍ୟାସ କବି ଫକୀରମୋହନ ସେନାପତି | ୭୬ |
| ୪୦. | ସଭାବ କବି ଗଙ୍ଗାଧର ମେହେର | ୭୮ |
| ୪୧. | ଛନ୍ଦ କବି ରାଧାମୋହନ ଗଡ଼ନାୟକ | ୮୦ |
| ୪୨. | କାନ୍ତ କବି ଲକ୍ଷ୍ମୀକାନ୍ତ ମହାପାତ୍ର | ୮୨ |
| ୪୩. | ଉତ୍କଳ ମଣି ଗୋପବନ୍ଧୁ | ୮୪ |
| ୪୪. | ଶିକ୍ଷକ କବି ପଣ୍ଡିତ ନିଳକଣ୍ଠ | ୮୭ |
| ୪୫. | ଅକ୍ଷୟ ତୁମ କୀରତି | ୮୯ |
| ୪୬. | ପ୍ରିୟବଂଧୁ ଦୁଃଖୀଶ୍ୟାମ | ୯୧ |
| ୪୭. | ମାଟିର କବି ଲୋକନାଥ ମିଶ୍ର(ଭରଦ୍ୱାଜ) | ୯୩ |

# ଗୁରେଇର ଚିଠି

(ଦାଦନ ଯାଇଥିବା ସ୍ୱାମୀ ମଦନ ପାଖକୁ)

ପ୍ରାଣନାଥ ମୋର ମଦନ, ଛାଡ଼ି ମୋତେ ଗଲ ଦାଦନ
ଯେତେ କଲି ମନା, ମାନିଲନି ଜମା, ନିତି ମୁଁ କରୁଚି ରୋଦନ ।୧।
ଦିନ ରାତି ଝୁରି ମରୁଚି, ନୟନୁ ଲୋତକ ଝରୁଚି
କିଏ ବା ବୁଝିବ ମନର ବେଦନା, କିପରି ମୋ ଦିନ ସରୁଚି ।୨।
ଚିଠି ପଢ଼ି କେତେ କାନ୍ଦିଚି, ବିଧାତାକୁ ଖାଲି ନନ୍ଦିଚି
କରମ ଆମର କେଡ଼େ ହୀନିମାନ, ଗୋଟିଏ ଡୋରିରେ ବାନ୍ଧିଚି ।୩।
ଅଧିକ ପଇସା ନିଶାରେ, ଭଲରେ ଚଳିବା ଆଶାରେ
ଅନ୍ୟ ରାଜ୍ୟେ ଯାଇ ନିର୍ଯ୍ୟାତନା ସହି ଭୋଗୁଛ କେତେ ଯେ ଦଶାରେ ।୪।
ବାଡ଼ିପଡ଼ା କାନ୍ତରାଟି, ଦଉନାହିଁ ପରା ଧରାଟି
କଅଣ ଖାଉଚ, କେମିତି ଚଳୁଛ, ମଜୁରୀ ମିଳୁନି ପରାଟି ।୫।
କୁନି ପୁଅ ତୁମ ଗୋଲିଆ, ହେଉଚି ବଡ଼ ବଗୁଲିଆ
ଦିନ ରାତି ଜମା ମୋ କୋଳ ଛାଡୁନି କାନ୍ଦିକି କରୁଚି ହାଲିଆ ।୬।
ଠୁକୁ ଠୁକୁ ଟିକେ ଚାଲୁଛି, ବାଆ ବାଆ ଖାଲି ହଉଚି
ଛ' ମାସର ଥିଲା ବରଷେ ହେଲାଣି, ଝୁଣିକି ଜୀବନ ଖାଉଚି ।୭।
ଦରକାର ନାହିଁ ପଇସା, ଗାଁରେ କରିବା ବେଉସା
ଦୁଇ ପ୍ରାଣୀ ଆମେ ମୂଲ ପାତି କରି, ପୁଅକୁ କରିବା ଭରସା ।୮।
ଦୁଃଖେ ସୁଖେ ତାକୁ ବଢ଼େଇ, କଲେଜରେ ପାଠ ପଢ଼େଇ
ମଣିଷ କରିବା ବୁଢ଼ା ବୁଢ଼ୀ ଦିନେ, ମାରିବନି ଆଉ ଗଡ଼େଇ ।୯।
ଶୁଣିଲି ଆମ ଗାଁ ଭଗିଆ, ଦାଦନରେ ହୋଇ ରୋଗୀଆ
ଗୋଟିଏ ବର୍ଷରେ ମଲା ଏଡସ୍‌ରେ (ଏବେ) ପୁଅ ତାର ଗାଈଜଗିଆ ।୧୦।
ସେ ରୋଗ ଯାହାକୁ ଧରିବ, ଅଳପ ଦିନରେ ମରିବ
ସୁଖ, ସ୍ୱପ୍ନ ତାର ହେବ ଛାରଖାର, ଆଉ କି ସଂସାର କରିବ ।୧୧।
ମୋ ରାଣ ତମକୁ ମଦନ, ଯିବନାହିଁ ବେଶ୍ୟା ସଦନ
ଏଡସ୍ ହୋଇଲେ ଜୀବନ ହାରିବି (ଆଉ) ଦେଖିବନି ମୋର ବଦନ ।୧୨।

# ଗୁରେଇର ଚିଠି

ସୁନା କାନଫୁଲ ବିକିଲି, ଫେରନ୍ତା ବାଟକୁ ଟାକିଲି,
ଡାକରେ ପଇସା ପଠେଇ ଦାଦନ, ପଠେଇବା ବୁଦ୍ଧି ଶିଖିଲି ।୧୩।
ଟଙ୍କା ପାଇ ଶୀଘ୍ର ଆସିବ, ସାବଧାନେ ରେଳେ ବସିବ
କିଛି ଲୋଡ଼ା ନାହିଁ ତୁମେ ଆସିଗଲେ, ସୁଖେ ମୋ ସଂସାର ହସିବ ।୧୪।
ସରପଞ୍ଚଙ୍କୁ କହି କରେଇ, ଶହେଦିନ କାମ ଧରେଇ
ସୁଖୀ ପରିବାର ଗଢ଼ିବା ଆମର, ଇତି ମୁଁ ତୁମର ଗୁରେଇ ।୧୫।



# ବର୍ଷା ଗୋ ତୁମେ ଆସ

ବର୍ଷା ଗୋ ତୁମେ ଆସ,
ଦେଶବାସୀ ସର୍ବେ କରୁଛୁ ସ୍ୱାଗତ
ଗାଇ ମାଙ୍ଗଳିକ ଅଭ୍ୟର୍ଥନା ଗୀତ
ହୁଅ ଗୋ ସଦୟ, ଦିଅ ବରାଭୟ
ନକର ଆଉ ନିରାଶ ।
ବର୍ଷା ଗୋ ତୁମେ ଆସ ।୧।

ରିମ୍ ଝିମ୍ ତୁମ ନୂପୁର ଛନ୍ଦେ,
ଢ଼ାଳି ଦିଅ ବାରି ମଧୁର ଗନ୍ଧେ
ବନ ବିଥିକାର ମଲ୍ଲୀ ଯୁଥିକାରେ
ଛୁଟାଇ ସୁରଭି ବାସ ।
ବର୍ଷା ଗୋ ତୁମେ ଆସ ।୨।

ଝଡ଼ ବରଷାର ସାନ୍ଦ୍ର ବାଦଲ
ଉନ୍ଦ୍ର ମାଦଳ ବାଜେ ।
ଦେବ ଦୁନ୍ଦୁଭି ବାଇ ଭରିଦିଅ
ଅତୃପ୍ତ ଧରଣୀ କୋଳେ
ସବୁଜ ଶ୍ୟାମଳ କ୍ଷେତ୍ରେ ଲହରାଇ
ମନ ମୁଗ୍ଧକର ଲାସ୍ୟ ।
ବର୍ଷା ଗୋ ତୁମେ ଆସ ।୩।

ଉପବନେ କଳି କୁସୁମ ସଜାଅ,
ମୟୂର ମୟୂରୀ ନୃତ୍ୟେ ମଜାଅ
ପ୍ରଜାପତି ମଧୁମକ୍ଷିକା ଅଳିରେ,
ଉଭଳା କରାଅ ଚୁମ୍ବନ୍ତି କଳିରେ,
ଶ୍ୟାମଳ କେଦାରେ କୃଷକ ପ୍ରାଣରେ
ଭରି ତୃପ୍ତିର ହାସ ।
ବର୍ଷା ଗୋ ତୁମେ ଆସ ।୪।

ବିରହ ବ୍ୟଥାରେ ବ୍ୟଥିତ ଅନ୍ତରେ
ଘାରି ହୁଏ ନବ ବଧୂ ,
ସାଜେ ବିହରିଣୀ, ପ୍ରିୟ କଥା ଗୁଣି
ଦୂରେ ତାର ପ୍ରାଣ ବନ୍ଧୁ ।
ଅନ୍ତରେ ତାହାର ପ୍ରେମର ସଂଚାର
କରିଦିଅ ପ୍ରୀତି ଭାଷ ।
ବର୍ଷା ଗୋ ତୁମେ ଆସ ।୫।

ବର୍ଷା ଗୋ ତୁମେ ଆସିବନି ସାଜି
ବନ୍ୟା ପ୍ରଳୟଙ୍କରୀ
ଧ୍ୱଂସର ତାଣ୍ଡବ କରିବନି ସୃଷ୍ଟି
ମହାକାଳ ରୂପ ଧରି
କରିବନି ନାଶ କୃଷକର ବଂଶ
ଜୀବନ ତାହାର ଚାଷ
ବର୍ଷାଗୋ ତୁମେ ଆସ ।
ବର୍ଷାଗୋ ତୁମେ ଆସ ।୬।



# ଶ୍ୱେତ ଗୋଲାପ ଓ ବୁଲ୍‌ବୁଲ୍

ରକ୍ତ ଗୋଲାପର ଉଦ୍ୟାନରେ ଥିଲା
ଧବଳ ଗୋଲାପ ଏକ,
ସଧବା ନାରୀଙ୍କ ଗହଣେ ଯେସନେ
ବିଧବା ରମଣୀ ଭେକ ।୧।

ମଧୁରସ ପାନ କରିବାକୁ ଆସି
ପଚାରିଲା ବୁଲ୍‌ବୁଲ୍
ଶ୍ୱେତ ଗୋଲାପ ଗୋ, କାହିଁକି ତୋ ଓଠେ
ହସ ନାହିଁ ବିଲ୍‌କୁଲ୍ ।୨।

ଗୋଲାପ କହିଲା ଚତୁର୍ଦ୍ଦିଗେ ମୋର
ରକ୍ତ ଗୋଲାପ ଶୋହେ
ଶ୍ୱେତ ଗୋଲାପ ମୁଁ ସୌନ୍ଦର୍ଯ୍ୟ ବିହୀନ
ତେଣୁ ହସ ନାହିଁ ମୁହେଁ ।।୩।।

କଅଣ କଲେ ତୁ ଖୁସି ହେବୁ କହ
ପଚାରିଲା ବୁଲ୍‌ବୁଲ୍
ପାରିବୁକି ତୋର ରକ୍ତରେ ମୋତେ
କରି ନାଲି ଗୁଲ୍‌ଗୁଲ୍ ? ।୪।

ନିଶ୍ଚୟ ପାରିବି କହି ବୁଲ୍‌ବୁଲ୍
କଣ୍ଟାରେ ହେଲା ଫୋଡ଼ି,
ବିନ୍ଦୁ ବିନ୍ଦୁ ରକ୍ତ ଶ୍ୱେତ ଗୋଲାପର
ପାଖୁଡ଼ାରେ ଦେଲା ଝାଡ଼ି ।୫।

ସର୍ବାଙ୍ଗ ତାହାର ଭିଜାଇ ରକ୍ତରେ
ନାଲି ରଙ୍ଗ ଦେଲା କରି ,
ଅଶେଷ ଯନ୍ତ୍ରଣା ସହି ନପାରି ସେ
ତଳେ ପଡ଼ିଗଲା ମରି ।।୬।।

ପ୍ରେମିକା ପାଇଁକି ଜୀବନ ସେ ଦେଲା
ଭଲପାଏ ତାକୁ ବୋଲି,
ସଚ୍ଚା ପ୍ରେମିକ ସେ ନିଜ ରକ୍ତ ଦେଇ
କରିଦେଲା ତାକୁ ନାଲି ।୭।
କ୍ଷଣିକ ଆନନ୍ଦ ପାଇଁ ସିନା ନାଲି
ହେଲା ଧବଳ ଗୋଲାପ
ବୁଲ୍‌ବୁଲ୍ ପ୍ରେମ ଚିରଦିନ ଦିଏ
ଅନ୍ତରେ ଦୁଃଖ ଅମାପ ।।୮।।





# ମମତା ଓ ପ୍ରେମ/ମା ଓ ପ୍ରେମିକା

ଧନିକ ଲଳନା କନକ ବରନା
ଅପରୁପା ସୁଚତୁରୀ
ପ୍ରେମ କରେ ଏକ ଗରିବ ଯୁବକ
ରୁପ ଗୁଣେ ନୁହେଁ ସରି ।୧।
ପରସ୍ପରେ ଭଲ ପାଇ ଦୁହେଁ ପ୍ରେମ
ସାଗରେ ହୋଇଲେ ମଗ୍ନ
ଅସମ୍ମତ ମାତା ପୁତ୍ରର ପ୍ରସ୍ତାବେ
ଅସ୍ଥିର ବିବାହ ଲଗ୍ନ ।୨।
ସମକକ୍ଷ ଆମେ ନୁହେଁ ସେମାନଙ୍କ
ତୁ ତ ଗରିବର ପୁଅ
ଧନୀଘର ଝିଅ ଆମ କୁଡ଼ିଆରେ
କିପରି ଚଳିବ କହ? ।୩।
ନିରସ ପ୍ରେମିକ ବିରସ ବଦନ
ସରସତା ହୀନ ମନ
ମାଆ ନାସ୍ତିବାଣୀ ପ୍ରେମିକାରେ କହେ
ଆମ ଘରେ ନାହିଁ ଧନ ।୪।
ପ୍ରେମିକା କହିଲା ରାଣ ମୋ ରହିଲା
ମତେ ଯଦି ଭଲପାଅ
ମାଆ ମୁଣ୍ଡ କାଟି କଟା ମୁଣ୍ଡ ଭେଟି
ଯଥା ଶୀଘ୍ର ମୋତେ ଦିଅ ।୫।
ପ୍ରେମିକାର କଥା ଦେଲା ମନେ ବ୍ୟଥା
ବୁଦ୍ଧି ଗଲା ତାର ହଜି
କିଏ ତା' ନିଜର କିଏ ଅବା ପର
ମାଆ ବା ପ୍ରେମିକା ଆଜି ।୬।
କାହାକୁ ଛାଡ଼ିବ କାହାକୁ ରଖିବ
ଭାବି ମୁଣ୍ଡ ଯାଏ ଘୁରି
ଚିନ୍ତାର ସାଗରେ ନିମଗ୍ନ ପ୍ରେମିକ

ନୁହେଁ କିଛି ସ୍ଥିର କରି ।୭।
ମା' ର ମମତା ପାଶେ ପ୍ରେମିକାର
ପ୍ରେମ ଶେଷେ ବଡ଼ ହେଲା
ଉପହାର ଦେବ ମା' ମୁଣ୍ଡ କାଟି
ଭାବି ମନେ ସ୍ଥିର କଲା ।୮।
ପ୍ରେମରେ ଅନ୍ଧ ପ୍ରେମିକା ଛନ୍ଦ
ନବୁଝି ପ୍ରେମିକ ଯାଇ
ଶୟନାବସ୍ଥାରେ କାଟି ସ୍ୱହସ୍ତରେ
ମା' ମୁଣ୍ଡ ଗଲା ନେଇ ।୯।
ଯିବାବେଳେ ପଥେ ଝୁଣ୍ଟିପଡ଼ି ତ୍ରସ୍ତେ
କହେ ମରିଗଲି ମାଆ
ଶୁଣି କଟା ମୁଣ୍ଡ ଖୋଲି କହେ ତୁଣ୍ଡ
କେତେ କଷ୍ଟ ହେଲା ଆହା ।୧୦।
ସ୍ଥିର କର ଧନ ତୋ ଅସ୍ଥିର ମନ
ତର ତର ହୁଅ ନାହିଁ
ଦେଖିକରି ବାଟ ଚାଲ ମୋର ରାଟ
ବ୍ୟସ୍ତ ଓ ବିବ୍ରତ ନୋହି ।୧୧।
ଏ ଜୀବନ ମୋର ଭଲପାଇଁ ତୋର
ଗଲେ କିଛି ନାହିଁ ଦୁଃଖ
ଗର୍ଭରେ ଧରିବା ଦିନଠାରୁ ସଦା
ମନାସିଛି ତୋର ସୁଖ ।୧୨।
ମା' ର ସେନେହ ମା' ର ମମତା
ଭୁଲି ଯିବୁନାହିଁ ଧନ
ମା' ବିନା ଆଉ କିଏ ବା ବୁଝିବ
ସଂସାରେ ସନ୍ତାନ ମନ ।୧୩।
ସୁଖେ ତୋ ଜୀବନ ବିତୁରେ ମୋ ଧନ
ଏତିକି କାମନା ମୋର
ମାଆ ଆଶୀର୍ବାଦ ତୋ ମଙ୍ଗଳ ପାଇଁ
ରହିଥିବ ନିରନ୍ତର ।୧୪।

## କାଶତଣ୍ଡିର ହସ/ ମା ଆସୁଛନ୍ତି ବୋଲି

ଫୁଲେଇ ହୁଅନା କାଶତଣ୍ଡି ତୁ ଲୋ
ମାଆ ଆସୁଛନ୍ତି ବୋଲି,
ଧବଳ ଶାଢ଼ୀର ପଣତ ଲହରେ
ହସି ହସି ଖିଲିଖିଲି ।୧।
ନାଚି ନାଚି ଆଉ ଝୁମି ଝୁମି ତୁଲୋ
ମିଛରେ ଉତ୍ତଳା ହେଉ,
ମା' ତ ଏମିତି ସର୍ବଦା ଆସନ୍ତି
ତୁଉ ଖାଲି ଝରିଯାଉ ।୨।
ଆସନ୍ତିନି କିମ୍ବା ଯାଆନ୍ତିନି ମାଆ
(ସେତ) ସବୁଠାରେ ରହିଛନ୍ତି,
"ବହ୍ୱାଡ଼ମ୍ବରେ ଲଘୁକ୍ରିୟା" ଖାଲି
ଅହଙ୍କାରୀ କରିଥାନ୍ତି ।୩।
କୋଟି କୋଟି ଅର୍ଥ ଅପବ୍ୟୟ କରି
ପୂଜା ଅର୍ଚ୍ଚନା ନାଆଁରେ,
ପ୍ରତିଯୋଗୀତାର ଆଡ଼ମ୍ବର ଚାଲେ
ସାଜ ସଜା ଅହଙ୍କାରେ ।୪।
ସଜୀବ ମାଆର ପୂଜା କେ କରେନି
ନିରାଶ୍ରୟା ନିଃସହାୟା
"ଭୀକ୍ଷାଂ ଦେହୀ" ଅବା "ବୃଦ୍ଧାଶ୍ରମ" ତାର
ଜୀବନର ଶେଷ ସାହା ।୫।
ଧନ୍ୟରେ ସନ୍ତାନ ଧନ୍ୟ ତୋର ବୁଦ୍ଧି
ଧନ୍ୟ ତୋହର ବିବେକ
ଅଲୋଡ଼ା ଅଖୋଜା ମା' ବାପା ଆଜି
କେଡ଼େ ତୁହି ଅବିବେକ ।୬।

ଦଶମାସ ତୋତେ ଗର୍ଭେ ଧରି ମାଆ
ରକ୍ତ ଦେଇ ଜନ୍ମ କଲା
ଜନ୍ମ ପରେ ପାଞ୍ଚବର୍ଷ ପରିଯନ୍ତେ
ସ୍ତନ୍ୟପାନ କରାଇଲା ।୭।

ନିଜେ ନଖାଇ ସେ ଖୁଆଇଲା ତୋତେ
କୋଡ଼ିଏ ବରଷ ଯାଏ
ବୃଦ୍ଧା ବୟସରେ ଭୁଲିଗଲୁ ତାକୁ
ଜନ୍ମ କରିଥିଲା ଯିଏ ।୮।

ସ୍ୱୟଂ ଭଗବାନ ସମ ମାଆ ବାପା
ଖାଦ୍ୟ ବିନା ଅସହାୟ
ନର୍ଜୀବ କଣ୍ଢେଇ ପୁଜା ପାଏ ଆଜି
ସଜୀବ ମା' ନିରାଶ୍ରୟ ।୯।





# ସ୍ୱାଗତ ଓଡ଼ିଆ ନବବର୍ଷ
# ମହାବିଷୁବ ସଂକ୍ରାନ୍ତି

ତୁମ, ରୁଣୁଝୁଣୁ ନୂପୁରର ନିକ୍ୱଣରେ
ନିନାଦିତ କରି ଏ ଉତ୍କଳ ଭୁବନେ,
ତୁମ, ସୌଜନ୍ୟର ସୌରଭରେ
ସୁରଭିତ କରି, ମଧୁମୟ ଗୁଞ୍ଜନେ,
ଆସ ଗୋ ଆସ "ନବବର୍ଷ" ଭରିଦିଅ
ପ୍ରେମର ଅମୃତ, ସକଳ ଜନମନେ ॥୧॥

ତୁମ, ନମନୀୟ, କମନୀୟ, ରମଣୀୟ,
ଚରଣ ଚାଲି, ପ୍ରତିଟି ଅଙ୍ଗନେ,
ତୁମ, ଶାନ୍ତ, ସରଳ, ସମଦର୍ଶୀତାର ସ୍ପର୍ଶରେ
ସବୁରି ମନ ମୋହି ସ୍ମିତ ଲପନେ
ଆସ ଗୋ ଆସ "ନବବର୍ଷ" ଭରିଦିଅ
ପ୍ରେମର ଅମୃତ ସକଳ ଜନମନେ ॥୨॥

ତୁମ ମହନୀୟ, ମମତା ମଧୁର, ମହକରେ
ମହକାଇ, ପ୍ରତିଟି କୋଣ ଅନୁକୋଣେ,
ତୁମ ସ୍ନେହ, ସଦ୍‌ଭାବ ଓ ସହୃଦୟତାର ରଜ୍ଜୁରେ
ବାନ୍ଧି, ସମଗ୍ର ଉତ୍କଳର ସନ୍ତାନଗଣେ,
ଆସ ଗୋ ଆସ "ନବବର୍ଷ" ଭରିଦିଅ
ପ୍ରେମର ଅମୃତ, ସକଳ ଜନମନେ ॥୩॥



## ଚନ୍ଦ୍ରସେଣା ଉବାଚ

ଚନ୍ଦ୍ରସେଣା ମୁଁ ଚନ୍ଦ୍ରସେଣା
ପତ୍ନୀ ମୋ ରାଧିକା, ଚତୁରୀ ଅଧିକା
ସୁନ୍ଦରୀ ପଣରେ ଜଗତଜିଣା ।୧।

ଚନ୍ଦ୍ରସେଣା ମୁଁ ଚନ୍ଦ୍ରସେଣା
ମଥୁରା ନଗରେ ଦହି ବିକିବାରେ
କେତେ ପୁରୁଷଙ୍କୁ କରେ ସେ ବଣା ।୨।

ଚନ୍ଦ୍ରସେଣା ମୁଁ ଚନ୍ଦ୍ରସେଣା
ଯମୁନା କୂଳରେ କଦମ୍ବ ମୂଳରେ
କୃଷ୍ଣ ସଂଗେ ପ୍ରୀତି ତା ଜଣାଶୁଣା ।୩।

ଚନ୍ଦ୍ରସେଣା ମୁଁ ଚନ୍ଦ୍ରସେଣା
ପରକୀୟା ପ୍ରୀତି କରେ ରାଧା ନିତି
ଯେତେ ଯେ କହିଲେ ମାନେନା ଜମା ।୪।

ଚନ୍ଦ୍ରସେଣା ମୁଁ ଚନ୍ଦ୍ରସେଣା
କରେନି ଖାତିରି ମୋ ରାଇ କିଶୋରୀ
ପୁରୁଷତ୍ୱ ମୋର ଥିବାରୁ ଊଣା ।୫।

ଚନ୍ଦ୍ରସେଣା ମୁଁ ଚନ୍ଦ୍ରସେଣା
ନପୁଂଷକ ପଣେ ଗୋପାଳଙ୍କ ଗଣେ
ଗୋପନଗରରେ ହୁଏ ମୁଁ ଗଣା ।୬।

ଚନ୍ଦ୍ରସେଣା ମୁଁ ଚନ୍ଦ୍ରସେଣା
ସବୁ ଜାଣିଶୁଣି ରହେ ମୁହଁ ତୁନି
ବାଜିବା ଡରରେ ନିନ୍ଦା ବାଜଣା ।୭।

ଚନ୍ଦ୍ରସେଣା ମୁଁ ଚନ୍ଦ୍ରସେଣା
ରାଧାମୁଖ ଚାହିଁ ଅଲାଜୁକ ହୋଇ
ବଞ୍ଚିବା ମୋ ପକ୍ଷେ କି ବିଡ଼ମ୍ବନା ।୮।

ଚନ୍ଦ୍ରସେଣା ମୁଁ ଚନ୍ଦ୍ରସେଣା
ବିବାହ ମୁଁ କରି ରାଧିକା ସୁନ୍ଦରୀ
ଭୋଗୁଛି ଅସହ୍ୟ ଯନ୍ତ୍ରଣା ସିନା ? ।୯।

# ଶାସ୍ତ୍ରୀ ହେ ଗଲଚାଲି

ଶାସ୍ତ୍ରୀ ହେ ଗଲଚାଲି,
ଦୁର୍ଦ୍ଦିନେ ଏହି ଦେଶ ମାତୃକାର
ଶୋକର ପ୍ରଦୀପ ଜାଳି,
ଶାସ୍ତ୍ରୀ ହେ ଗଲଚାଲି ॥୧॥

ଚାହିଁଛି ଜନନୀ ଫେରିବ ସନ୍ତାନ
ବିଜୟର ଟୀକା ଧରି
ଶାସ୍ତ୍ରୀ ହେ ଗଲ ଚାଲି ॥୨॥

ଯୁଦ୍ଧ ବିରତି ଶାନ୍ତି ପ୍ରସ୍ତାବେ
ଚୁକ୍ତି ସ୍ୱାକ୍ଷର କରି,
ଶାସ୍ତ୍ରୀ ହେ ଗଲ ଚାଲି ॥୩॥

ଦେଶ ଜନତାର ମଙ୍ଗଳ ମନାସୀ
ଜୀବନକୁ ଦେଇ ବଳି
ଶାସ୍ତ୍ରୀ ହେ ଗଲ ଚାଲି ॥୪॥

ଶାନ୍ତି ସମ୍ମିଳନୀ ତାସ୍‌କେଣ୍ଟ୍‌ଠାରେ
ଶେଷ ନିଃଶ୍ୱାସ ଢ଼ାଳି
ଶାସ୍ତ୍ର ହେ ଗଲ ଚାଲି ॥୫॥

ଚାହିଁଛି କାବୁଲ ସଜାଇ ପ୍ରାଙ୍ଗଣ
ପାଇବାକୁ ପାଦଧୂଳି
ଶାସ୍ତ୍ରୀ ହେ ଗଲ ଚାଲି ॥୬॥

କୋଟି ମାନବର ମୁଖ ମଣ୍ଡଳରେ,
ବିଷାଦର ଛାୟା ବୋଳି
ଶାସ୍ତ୍ରୀ ହେ ଗଲ ଚାଲି ॥୭॥

ଦୁଃଖେ ବିବସ ଭାରତ ଜନନୀ
ତବ ଗୁଣ ବଳୀ ଭାଳି
ଶାସ୍ତ୍ରୀ ହେ ଗଲ ଚାଲି ॥୮॥

ଗଢ଼ିଉଠୁ ଦେଶ, ଆଗଉ ଯୋଜନା
ଶାନ୍ତି ମୈତ୍ରି ପାଳି
ଶାସ୍ତ୍ରି ହେ ଗଲ ଚାଲି ॥୯॥

ସେ ପୁରରେ ଥାଇ ତୁମ ହିନ୍ଦୁସ୍ଥାନେ
ଢାଳ ସୁଭାଶିଷବାରି
ଶାସ୍ତ୍ରୀ ହେ ଗଲ ଚାଲି ॥୧୦॥

ହେ ମହାମାନବ ହେ ପୂଜ୍ୟଦେବତା
ଘେନ ନମସ୍କାର ଦେଶଜନତାର
ଏତିକି ମାତ୍ରକ ଅଳି ,
ଶାସ୍ତ୍ରୀ ହେ ଗଲ ଚାଲି ॥୧୧॥
ଶାସ୍ତ୍ରୀ ହେ ଗଲ ଚାଲି ॥



# ଦେଶ ମାତୃକାର ଆରାଧନା

ଯାଇଛି ସେ ଦିନ ଚାଲି, ନାହିଁ ଗୋ ଜନନୀ,
ଦେଶର ଗୌରବ ରବି ଅସ୍ତ ହୋଇଲେଣି ॥
ଦେବୀ, ଜନନୀ ଗୋ ।୧।
ନାହାଁନ୍ତି ତୋ ବରପୁତ୍ର ଗାନ୍ଧୀ ମହାତମା,
ଭରିଥିଲା ଯା ଅନ୍ତରେ ସ୍ନେହ, ପ୍ରେମ, କ୍ଷମା
ଦେବୀ, ଜନନୀ ଗୋ ।୨।
ସତ୍ୟ, ଶାନ୍ତି, ଅଂହିସାର ଅସ୍ତ୍ର ଧରି ହାତେ
ଆଣିଦେଲେ ସ୍ୱାଧୀନତା ବିନା ରକ୍ତପାତେ
ଦେବୀ, ଜନନୀ ଗୋ ।୩।
ନାହାଁନ୍ତି ନେହେରୁ ଆଉ ଲାଲ ବାହାଦୁର
ଦେଶ, ବିଦେଶରେ ଯଶ ପୁରିଥିଲା ଯାର ॥
ଦେବୀ, ଜନନୀ ଗୋ ।୪।
ଅହିଂସାର ମନ୍ତ୍ର ନେଇ ଶାନ୍ତି ଦୂତ ରୂପେ
ପରିଚିତ ଥିଲେ ଯିଏ,ଏ ସାରା ଜଗତେ ॥
ଦେବୀ, ଜନନୀ ଗୋ ।୫।
ନାହାଁନ୍ତି ସୁବାଷ ଚନ୍ଦ୍ର ବୀର ଶିରୋମଣି,
ସ୍ୱାଧିନତା ପାଇଁ ତୋର ଯେ ଥିଲେ ଅଗ୍ରଣୀ ॥
ଦେବୀ, ଜନନୀ ଗୋ ।୬।
ଉତ୍କଳର ବରପୁତ୍ର ନାହିଁ ଗୋପବନ୍ଧୁ,
ବିପଦରେ ଦରିଦ୍ରର ଥିଲେ ଯିଏ ବନ୍ଧୁ ॥
ଦେବୀ,ଜନନୀ ଗୋ ।୭।
ବକ୍ସି ଜଗବନ୍ଧୁ ନାହିଁ,ନାହିଁ ତୋ ଭଗତ
ଦେଶ ପାଇଁ ପ୍ରାଣ ଦେଇ, ହେଲେ ଯେ ମହତ ॥
ଦେବୀ,ଜନନୀ ଗୋ ।୮।

ଲାଲା ଲଜପତ ଆଉ ବାଳଗଙ୍ଗାଧର,
ନାହାଁନ୍ତି ବିପିନ ପାଳ, ଆଉ ତୋ କୋଳର ॥
ଦେବୀ, ଜନନୀ ଗୋ ।୯।

ବିଭିନ୍ନ ଦିଗରୁ ଶତ୍ରୁ କରେ ଆକ୍ରମଣ,
ଜନସଂଖ୍ୟା ବଢ଼େ ପୁଣି ବଢ଼େ ଦର ଦାମ ॥
ଦେବୀ,ଜନନୀ ଗୋ ।୧୦।

ସତେ ଆଉ ଭାଗ୍ୟ ରବି ଉଇଁବକି ନାହିଁ
ସତେ ଏ ଦୁଃଖ ଦୁର୍ଦ୍ଦଶା ନିଶି ଯିବ ପାହି ॥
ଦେବୀ, ଜନନୀ ଗୋ ।୧୧।

ଭକ୍ତି ଭରେ ନମୁଁ ମାତ ଆଜି ତୋ ଚରଣେ,
ସର୍ବ ବିପଦରୁ ରକ୍ଷା କର ତୋ ସନ୍ତାନେ ॥
ଦେବୀ, ଜନନୀ ଗୋ ।୧୨।



# ଯଉବନ

ବାଲ୍ୟ, କୈଶୋର, ଯୌବନ, ଜରାମଧ୍ୟରେ,
ପ୍ରଥମ ଦୁଇଟି ବିତେ ସଦା ପରାଧୀନରେ ॥
ଯଉବନ ଅଟେ ଜୀବନର ଶ୍ରେଷ୍ଠ ସମୟ,
ଭଲ ମନ୍ଦ ବାଛ, ବିଚାର ବେଭାର ବିଷୟ ॥
ଜୀବନରେ ନୂଆ ଅନୁଭୁତି ଆସେ ମନରେ,
ଫୁଟେ କେତେ ଫୁଲ, ଯଉବନ ଉପବନରେ ॥
ଦେହେ ମନେ ଆସେ ବଳ ବୀର୍ଯ୍ୟ ଶକ୍ତି ଅଶେଷ,
କଟେ ଭୟ ଭ୍ରାନ୍ତି, ଭରିଯାଏ ମନେ ସାହସ ॥
ପ୍ରେମର ଝରଣା ଝରେ ଯଉବନ ବନରୁ,
କେତେଯେ ନୂତନ କାମନା ବିକଶେ ମନରୁ ॥
ସାଥି ଖୋଜେ ମନ, ନିର୍ଜନତା ହୁଏ ଦୁରୁହ,
ଅସ୍ଥିର ହୁଏ ମନ ପ୍ରାଣ ସଦା, ଜୀବନକୁ ଘାରେ ବିରହ ॥
ରୂପର ଗୁଣର ସାଥିଟିଏ ସଦାମନ ଚାହେଁ,
ସୁସଜ୍ଜିତ ହୁଏ ପରିପାଟୀ, ଯୌବନ ରୂପ ଗନ୍ଧ ମୋହେ ॥
ସୁଖର ସଂସାର ଗଢ଼ିଉଠେ ସାଥି ଆଗମନେ
ଦୁଃଖେ ବିତଇ ଦିବସ ରଜନୀ ତା ବିହୁନେ ॥
ମନଲାଖୀ ସାଥି ମିଳିଲେ ସୁଖରେ ବିତେ ଦିନ,
ମନ ନ ମାନିଲେ ହା'ହୁତାସେ ବିତେ ଚିରଦିନ ॥
ଜୀବନରେ ସୁଖ ସମୃଦ୍ଧିର ବେଳ ଯଉବନ,
ବିଳାସ ବ୍ୟସନେ ରହିବାକୁ ସଦା ଚାହେଁ ମନ ॥
ସୁଖ ପରେ ଦୁଃଖ, ନିୟତିର ଅଟେ ବିଧାନ,
ଆସେ ତେଣୁ ଜରା, ନେଇ କେତେକେତେ କଷଣ ॥
ରୋଗ, ଶୋକ, ଦୁଃଖେ ଜର୍ଜରିତ ହୋଇ ମଣିଷ,
ତେଜେ ଇହଧାମ ପରିଜନେ କରି ବିରସ ॥
ବିଳାସ, ବ୍ୟସନ, ଉପଭୋଗ ନୁହେଁ, କର୍ମମୟ ଏ ଜୀବନ,
କର୍ତ୍ତବ୍ୟ କର ଥିବାଯାଏ ଦେହେ, ଶକ୍ତି ସାମର୍ଥ୍ୟ ଓ ଯଉବନ ॥

# ପ୍ରକୃତି ଓ ପରିବେଶ

ଜୀବ ଜଗତର ସୃଷ୍ଟି ପୂର୍ବରୁ
ଭାବିଚିନ୍ତି ସୃଷ୍ଟି କର୍ତ୍ତା
ଆବଶ୍ୟକ ପରିବେଶ ପ୍ରଥମରେ
ସୃଜିଲେ ବିଶ୍ୱବିଧାତା (୧)

ଜଳ, ସ୍ଥଳ, ବନ, ଗିରୀ, ବୃକ୍ଷଲତା
ନଦୀ, ପାହାଡ଼, ଝରଣା
ଆଲୋକ, ଉତ୍ତାପ, ବର୍ଷା, ଅଗ୍ନୀ, ବାୟୁ
ଆଦି ସେ କଲେ ସର୍ଜନା (୨)

ଅତୀବ ସୁନ୍ଦର ପରିବେଶ ରଚି
ଶେଷେ ଦେଇ ଦିବ୍ୟଜ୍ଞାନ
ସେ ସବୁ ସୁରକ୍ଷା ପାଇଁକି ମଣିଷ
ସୃଷ୍ଟି କଲେ ଭଗବାନ (୩)

ସୁରକ୍ଷା ବଦଳେ ନିଜ ସ୍ୱାର୍ଥ ପାଇଁ
କାଟି ବୃକ୍ଷଲତା ରାଜି
ପରିବେଶ ନାଶ କରୁଛି ମଣିଷ
କିଏ ବା ତା ପ୍ରତିବାଦୀ ?(୪)

ବୃକ୍ଷଲତା କାଟି କଳକାରଖାନା
ବସାଏ ଉନ୍ନତି ପାଇଁ
ପ୍ରଦୂଷିତ ହୁଏ ପରିବେଶ ସିଏ
ବୁଝି, ବୁଝି ପାରେ ନାହିଁ । (୫)

କଳ କାରଖାନା, ଗାଡ଼ି ମଟରର
ବର୍ଜିତ ପଦାର୍ଥେ ଆଜି
ଖାଦ୍ୟ, ଜଳ, ବାୟୁ, ପ୍ରଦୂଷିତ ହୁଏ
ମଣିଷ ପାରେନି ବୁଝି (୬)

ବଣ, ପାହାଡ଼ ଓ ଜଙ୍ଗଲରୁ ଗଛ
କାଟି କରୁଅଛି ପଦା
ଔଷଧୀୟ ବୃକ୍ଷ ସହ ବନ୍ୟଜନ୍ତୁ
ହୋଇଗଲେ ସବୁ ବିଦା (୭)

ଦେଶୀ ପିଡ଼ିଆ ଓ ଖତ ମୁତ ଛାଡ଼ି
କମ୍ପାନୀ ପିଡ଼ିଆ ଦେଇ
ଅଧିକ ଅମଳ ଲୋଭରେ ଖାଦ୍ୟରେ
ବିଷ ଦେଉଛି ମିଶାଇ (୮)

କଂପାନୀ ସାର ଓ ବିଷ ମିଶା ଫଳ-
ପରିବା ଖାଉଛୁ ଆମେ
ଅଳ୍ପ ବୟସରେ ରୋଗ ବ୍ୟାଧି ଘୋଟି
ଅକ୍ଷମ ହେଉଛୁ କାମେ (୯)

ମଧୁମେହ, ହୃଦ୍‌ଘାତ ମଣିଷକୁ
ଅଳ୍ପାୟୁଷ ଆଜି କରେ
ହିପାଟାଇଟିଜ୍, ଏଡ଼ସ୍ ଆଦି ରୋଗ
ଲାଗି ଅକାଳରେ ଝରେ (୧୦)

ଗ୍ରୀଷ୍ମରେ ପ୍ରଚଣ୍ଡ ଉତ୍ତାପ ସହିତ
ବର୍ଷାରେ ବାତ୍ୟା ଓ ବନ୍ୟା
ଭୂମିକମ୍ପ, ସୁନାମୀରେ ଏ ଧରଣୀ
ହେବ ଜନ ପ୍ରାଣୀ ଶୂନ୍ୟା (୧୧)

ସୁରକ୍ଷା କରିବା ପରିବେଶ ଆମେ
କରିବାନି ପ୍ରଦୂଷଣ
ବାୟୁ, ଜଳ, ସ୍ଥଳ ରଖିବା ନିର୍ମଳ
କରିବା ବୃକ୍ଷ ରୋପଣ । (୧୨)

# ନାରୀ ସୁରକ୍ଷା

ଈଶ୍ୱରଙ୍କ ସର୍ବଶ୍ରେଷ୍ଠ ଅବଦାନ
ପୃଥିବୀକୁ ଅଟେ ନାରୀ,
ସୃଷ୍ଟିକର୍ତ୍ତା ବ୍ରହ୍ମା "ପୁରୁଷ" ହୋଇଲେ
"ନାରୀ" ନାରାୟଣୀ ପରି (୧)

କନ୍ୟା ଓ ଭଗିନୀ, ଜାୟା ଓ ଜନନୀ
ରୂପେ ସେ କଲ୍ୟାଣମୟୀ
ଦୁଇ କୁଳେ ହିତା ତେଣୁ ସେ ଦୁହିତା
ସ୍ନେହ ଓ ମମତାମୟୀ (୨)

କର୍ତ୍ତବ୍ୟ ଓ କର୍ମ ପାଇଁ ସମାଜରେ
ନାରୀ ଅଭିନନ୍ଦନୀୟା
ବରେଣ୍ୟା, ନମସ୍ୟା ପୂଜ୍ୟା ସେ ଅଟେ
ମହନୀୟା, ବନ୍ଦନୀୟା (୩)

ସୃଷ୍ଟିର ସର୍ଜନା ପାଇଁ ନରନାରୀ
ସମାନ ସର୍ବତୋ ଭାବେ
ରହିଲେ ସଂଭବ ସିନା ସୃଷ୍ଟି ହେବ
ଦ୍ୱନ୍ଦ୍ୱ ନ ରହିବ ଲବେ (୪)

ଦଶମାସ ଗର୍ଭେ ଧରି ସନ୍ତାନକୁ
ପରିପାଳନ ସେ କରେ
ଜନ୍ମ ପରେ ପୁଣି ସ୍ତନ୍ୟପାନ ଦେଇ
ବଢ଼ାଏ ଅତି ସ୍ନେହରେ (୫)

ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ
ତେଣୁ ଅଟେ ବଡ଼ ସିନା

ପୁରୁଷ ପ୍ରଧାନ ସମାଜ ନାରୀର
　　ମହତ୍ୱ ବୁଝି ବୁଝେନା (୬)
ବଂଶରକ୍ଷା ପାଇଁ ପୁତ୍ର ଲୋଡ଼ା ଭାବି
　　“କନ୍ୟାଭ୍ରୁଣ” ହତ୍ୟା କରେ
କେବଳ ପୁରୁଷ ଦ୍ୱାରା କି ସଂଭବ
　　ନାରୀ ନଥିଲେ ସୃଷ୍ଟିରେ (୭)
ନାରୀର ମହତ୍ୱ ନାରୀର ଦାୟିତ୍ୱ
　　ନାରୀର ସ୍ଥାୟିତ୍ୱ ବୁଝି
ସୁରକ୍ଷା ତାହାର ଏକାନ୍ତ କର୍ତ୍ତବ୍ୟ
　　ସମାଜ ପାଇଁକି ଆଜି (୮)
ନାରୀ ବଞ୍ଚିଲେ ଏ ସମାଜ ବଞ୍ଚିବ
　　ସୁନ୍ଦର ହୋଇବ ଧରା
ନାରୀ ବିନା ଧ୍ୱଂସ ମାନବ ସମାଜ
　　ସୃଷ୍ଟି ଅସମ୍ଭବ ପରା ? (୯)
ନାରୀର ସୁରକ୍ଷା କରିବା ଆମେରେ
　　ସୃଷ୍ଟିର ମଙ୍ଗଳ ପାଇଁ
ସରସ ସୁନ୍ଦର ହେବ ଏ ସଂସାର
　　ସନ୍ତୋଷ ଲଭିବେ ସାଇଁ (୧୦)





## ସକାଳ



ରଜନୀ ପାହିଲା ସୁରୁଜ ଉଇଁଲା
ବୁଣି ଦେଲା ନାଲି ମୁରୁଜ
ଆଲୋକ ଆସିଲା ଅନ୍ଧାର ଲୁଚିଲା
ପ୍ରକାଶିଲା ଜ୍ୟୋତି ପୁରୁବ ॥୧॥

ନିଶବ୍ଦ ନିଥର ନିଶିଥ ନିକର
ନିମଜ୍ଜି ନିଦ୍ରାରେ ନିରବେ,
ଅଚେତନ ଥିଲେ ସଚେତନ ହେଲେ
ଜନ,ଜୀବଯନ୍ତୁ ସରବେ ॥୨॥

କୁକୁଟ କୁଜନ, କୋକିଳର ସ୍ୱନ,
କାକ ସ୍ୱନ ଶୁଭେ କର୍ଣ୍ଣରେ
ଚଷା ଧରି ହଳ କରି ଅନୁକୂଳ
କ୍ଷେତେ ଯାଏ ଖୁସି ମନରେ ॥୩॥

ବୋହୂ ଭୁଆଶୁଣି ଗୋବରର ପାଣି
ଦାଣ୍ଡ ଅଗଣାରେ ସିଚଂନ୍ତି
କଂସାଗିନା ମାଜି ବାସି କାମ ସାରି
ଘର ଲିପା ପୋଛା କରନ୍ତି ॥୪॥

ନବୀନ ପୁଲ୍କେ ନବୀନ ଉଲ୍ଲାସେ
ତନୁ ମନ କର୍ମ ଚଞ୍ଚଳ,
ନୂତନ ପ୍ରେରଣା ନୂତନ ବାସନା
ଧରି ଉପସ୍ଥିତ ସକାଳ ॥୫॥

ସ୍ନେହ ପ୍ରେମ ଶାନ୍ତି, ଦୟା କ୍ଷମା ମତି
ଭରିଦିଅ ସବୁ ହୃଦୟେ
ଜାତିର ସଂହତି ଦେଶର ପ୍ରଗତି
କରିଦିଅ "ଭାବ" ହୃଦୟେ ॥୬॥

# ବିଧବାର ବିଳାପ

ଜୀବନ ମୋ ମରୁମୟ, ବଞ୍ଚିଛି ମୁଁ ଖାଲି,
ଦେଖେ ସଦା ଚାରିଆଡ଼େ ନିରାଶାରେ ବାଲି ।।
ନାହିଁ ସୁଖ ନାହିଁ ଶାନ୍ତି ମୋ ଜୀବନେ ଆଉ,
ଦିନୁ ଦିନ ଆସେ ମାଡ଼ି ଏ ଦୁନିଆଁ ଦାଉ ।।
କାଲି ପରି ଲାଗେ ମୋତେ ଥିଲା ମୋର ସବୁ,
କି ପାପ ମୁଁ କରିଥିଲି ଘେନିଗଲ ପ୍ରଭୁ ।।
ସବୁ ଯଦି ନେଲ ନିଅ, ମୋତେ ତାର ପାଶେ,
ବଞ୍ଚିବି କାହିଁକି କୁହ, ଆଉ କେଉଁ ଆଶେ ।।
ଆହା ବୋଲି କହିବାକୁ ନାହିଁ କେହି ମୋର,
ଏ ଦୁନିଆଁ ଭାବେ ମୋତେ ପର ସାତ ପର ।।
ନଖାଇଲେ ଖା' ବୋଲି କହେ ନାହିଁ କେହି,
ନିଶି ଦିନ ଲୁହ ଧାର ଯାଏ ଖାଲି ବହି ।।
ମର୍ମନ୍ତୁଦ ଦୁଃଖେ ଯେବେ ହୁଏ ମୁଁ ବ୍ୟାକୁଳ,
ହୁଏ ନାହିଁ କେହି ଟିକେ ମୋ ପାଇଁ ଆକୁଳ ।।
ଏ ଦୁନିଆଁ ବନ୍ଧା ଖାଲି ନିଜ ସ୍ୱାର୍ଥ ପାଇଁ,
ପର ପାଇଁ କିଆଁ କିଏ ହେବ ଦୁଃଖ ଗ୍ରାହୀ ।।
ଦିଶେ ନାହିଁ ବୁଦ୍ଧି ବାଟ ଦିଅ ପ୍ରଭୁ ଦେଖା ,
ଚାହେଁ ଖାଲି ମୃତ୍ୟୁ ମୁହଁ ମୃତ୍ୟୁ ମୋର ସଖା ।।
ହେ ମୃତ୍ୟୁ ଦେବତା ଆସ ନିଅ ଏ ପରାଣ,
ବଞ୍ଚିବି କାହିଁକି ଆଉ, ଯାଉ ଏ ଜୀବନ ।।

## ଜାଗ ଭାରତର ବୀର ସନ୍ତାନ

ଜାଗ ଭାରତର ବୀର ସନ୍ତାନ
କାଶ୍ମୀର ଡାକେ ଆଜି
ସିଂହର ଗୁମ୍ଫାରେ ଶୃଗାଳ ପଶିକି
ଦର୍ପ ଦେଖାଏ ପାଜି
ସଂତ୍ରାସବାଦୀ ଆଣି
ବାହାସ୍ଫୋଟ ମାରେ ମୁଣ୍ଡ ନେଇଯିବ
ଭାରତ ମାତାର ପୁଣି ।୧।
ହିମାଳୟ ଠାରୁ କୁମାରିକା ଯାଏ
ଯେତେ ବୀର ଭାରତୀୟ
ଭେଦଭାବ ଭୁଲି ଦଳାଦଳି ତେଜି
ସର୍ବେ ଏକଜୁଟ୍ ହୁଅ
ଜୀବନକୁ କରି ପଣ
ମରିଯିବା ପଛେ ଡରିଯିବା ନାହିଁ
କରିବା ନିଶ୍ଚୟ ରଣ ।୨।
ଏ ଦେଶ ମାଟିର ବୀର ସନ୍ତାନ
ସୁଭାଷ ବୋଷ ଦିନେ
ରକ୍ତ ଦିଅ ମୁଁ ସ୍ୱାଧୀନତା ଦେବି
କହିଥିଲେ ବୀର ପଣେ
ସମୟ ଆସିଛି ଆଜି
ଜନ୍ମଭୂମି ପାଇଁ ଜୀବନ ଦେବାରେ
ବୀର ସୈନିକ ସାଜି ।୩।
ଭାରତ ମାତାର ଅବିଚ୍ଛେଦ୍ୟ ଅଙ୍ଗ
କାଶ୍ମୀର ଆମର ସ୍ୱର୍ଗ
ତିନି ଥର ହାରି ଆସ୍ଫାଳନ କର

ତଥାପି ଯବନ ବର୍ଗ
ଇଂଚେ ବି ଦବୁନି ଛାଡ଼ି
ପରମାଣୁ ବୋମା ଧମକ ଦେଉଛ
ଯିବରେ ସମୂଳେ ଉଡ଼ି ।୪।
ଶାନ୍ତି ଚାହୁଁ ଆମେ ଯୁଦ୍ଧ ଚାହୁଁନା
ଦେବ ଭୂମି ଏ ଭାରତ
ଦାନବ ସଦୃଶ ଆକ୍ରମଣ କଲେ
ହେବରେ ନଷ୍ଟେ ନିପାତ
ଛାଡ଼ ରକ୍ତ ପାତ ନିଶା
ସମଗ୍ର ବିଶ୍ୱର ଦୃଷ୍ଟି ଭଙ୍ଗିରୁକି
ପାଅ ନାହିଁ କଛି ଦିଶା ? ।୫।
ଦେଶ ପାଇଁ ଲଢ଼ି ସହୀଦ ହୋଇଛ
ଯେତେ ହେ ବୀର ଜବାନ
ଜନ୍ମ ତୁମର ସାର୍ଥକ ଅଟେ
ଜୀବନ ତୁମ ମହାନ
ମରିବି ଅମର ତୁମେ
ମହାଭାରତର ଅଭିମନ୍ୟୁ ସମ
ବୀର ଏ ଭାରତ ଭୂମେ ।୬।
ଦେଶର ଗର୍ବ ଗୌରବ ତୁମେ
ଧନ୍ୟ ଧନ୍ୟ ତୁମ କର୍ମ
ଜନ୍ମ ଭୂମିର ସୁଯୋଗ୍ୟ ସନ୍ତାନ
ତା ସୁରକ୍ଷା ତୁମ ଧର୍ମ
ତୁମରି ଚରଣ ତଳେ
ପ୍ରଣତି ଢାଳୁଛୁ ଜନ୍ମ ଲଭ ପୁଣି
ଭାରତ ମାତାର କୋଳେ ।୭।

## ସ୍ୱାର୍ଥବାଦୀ/ସୁବିଧାବାଦୀ

ବର୍ଷା ଯେଉଁ ଆଡ଼େ ଛତା ସେଇଆଡ଼େ
ଦେଖାନ୍ତି ସୁବିଧାବାଦୀ
ଦୋସ୍ତିକରି ସ୍ୱାର୍ଥ ହାସଲ କରିବା
ଅଟେ ତାଙ୍କ କାରସାଦି ।୧।
ସ୍ୱାର୍ଥ ପାଇଁ ସବୁ କରି ସେ ପାରନ୍ତି
ଅନୀତି ପଛରେ ଧାଇଁ
ଚାଟୁକାର ସାଜି ଚାଟୁ ସେ କରନ୍ତି
ବିବେକ ହରାଇ ଦେଇ ।୨।
ମିଛ କଥା କହି ତୋଷାମଦ କରି
ଅନ୍ୟର ହୃଦୟ ଜିଣି
ସ୍ୱାର୍ଥ ସିଦ୍ଧି ପାଇଁ ଗୋଡ଼ାନ୍ତି ପଛରେ
କଥାରେ ମନକୁ କିଣି ।୩।
ଟେକା ଟେକି କରି ଚିକ୍କଣିଆ କଥା
କହି ସେ କରନ୍ତି ଦୋସ୍ତି
ବେଳ ଉଣ୍ଡି ପଟେ ଭଲ କରି ମାରି
ଦୋସ୍ତକୁ ଦିଅନ୍ତି ଶାସ୍ତି ।୪।
ବଡ଼ ବଡ଼ ଲୋକ ସହ ସୁସମ୍ପର୍କ
କରି ସ୍ୱାର୍ଥ ସିଦ୍ଧି ପାଇଁ
ନିଜଖଲି ନିଜେ ସିଲେଇ କରନ୍ତି
ସ୍ୱାର୍ଥକୁ ପ୍ରାଧାନ୍ୟ ଦେଇ ।୫।
କାମ ସରିଗଲେ କାଣିଆ କପିଳା
ଆଉ ହୁଏ ନାହିଁ ଭେଟ
ଅସୂୟା ପଣରେ ସାହାଯ୍ୟକାରୀକୁ
ପଛରୁ ମାରନ୍ତି ଚୋଟ ।୬।
ଭୁଲିଯାନ୍ତି ସିଏ କରିଥାଏ ଯିଏ
ଯେତେ ତାଙ୍କ ଉପକାର

ଏକମାତ୍ର ଲକ୍ଷ୍ୟ ସ୍ୱାର୍ଥ ହାସଲ
ଅଟେ ତାଙ୍କ ଜୀବନର ।୭।
ଅଙ୍ଗୁଳି ପ୍ରବେଶେ ବାହୁର ପ୍ରବେଶ
ସେମାନଙ୍କ ମନୋଭାବ
(ତାଙ୍କୁ) ଗାଡ଼ିଆ କଦାପି ଦେଖାଇବ ନାହିଁ
ମାଛଗଣ୍ଡେ ପଛେ ଦେବ ।୮।
ଦେଖି ଦେଲେ ଥରେ ଗାଡ଼ିଆକୁ ଯିଏ
ସବୁ ବେଳେ ଧରେ ମାଛ
ବୁଝି ସେ ପାରେନି ମାଛ ସରିଗଲେ
ଗାଡ଼ିଆ ହୋଇବ ପଛ ।୯।
ଖଡ଼ା ସିଝିବନି ହାତେ ସେମାନଙ୍କ
ମିଛେ ଦେଖାନ୍ତି ଫୁଟାଣି
ଅଲାଜୁକ ପଣେ ବଳେ ପଶିବେଶି
ବଖାଣନ୍ତି ଅଜ୍ଞ ଜାଣି ।୧୦।
କାମନାହିଁ କିମ୍ବା ଫୁରୁସତ ନାହିଁ
ବ୍ୟସ୍ତ ବହୁଳ ଜୀବନ
ଏ ଘର ମାଉସୀ ସେ ଘର ପିଉସୀ
ହୋଇ ସେ ବିତାନ୍ତି ଦିନ ।୧୧।
ଚେଷ୍ଟା କରି ଯିଏ ଅନାମଧେୟଙ୍କୁ
ଆଣେ ଲୋକ ଲୋଚନକୁ
ତାଠାରୁ ଅଧିକ ନିଜର ସମ୍ମାନ
ବୋଲି ଭାବନ୍ତି ମନକୁ ।୧୨।
ନନାଙ୍କ ଶ୍ରାଦ୍ଧରେ ଶ୍ରାଦ୍ଧ ସେ କରନ୍ତି
ଚିକଣିଆ କଥା କହି
ମାଛର ତେଲରେ ମାଛସେ ଭାଜନ୍ତି
ନିଜର ସୁବିଧା ପାଇଁ ।୧୩।
ନିଜକୁ ନିଜେ ଯେ ଜ୍ଞାନୀ ଗୁଣୀ ଭାବେ
ଧିକ ତାଙ୍କର ଜୀବନ
ଶତଧିକ୍ ତାଙ୍କ ବୁଦ୍ଧି ବିବେକକୁ
ଧିକ୍ ଅବିବେକୀ ପଣ ।୧୪।

# ଲୋକହସା ଖାଲି ସାର

ଯେଉଁ ପକ୍ଷୀ ଉଡ଼େ ଯେତେ ଦୂର ସିଏ
ଜାଣେ ଗହାର ବେଭାର
ଅସରପା କେବେ ହେବକି ଚଢ଼େଇ
ଅଛି ବୋଲି ପର ତାର ? ।୧।
ସବୁ ଶ୍ୱାନ ଯଦି ସ୍ୱର୍ଗକୁ ଯିବେ
ଚାଟିବ କେ ଆଉ ଖଲି
ଯେତେ ବି ବାସିଲେ ପୋକଶୁଙ୍ଘା କେବେ
ହୋଇ ପାରିବକି ମଲ୍ଲି ? ।୨।
ମୂଷା ଯଦି ଭାବେ ଶକ୍ତିଶାଳୀ ନିଜେ
ଅଛି ବୋଲି ତୀକ୍ଷ୍ଣ ଦାନ୍ତ
ସମ୍ମୁଖେ ପଡ଼ିଲେ ସିଂହ କି କରିବ
କେବେ ତାହା ବରଦାସ୍ତ ? ।୩।
ଯେ ଡାଳେ ବସିଲେ ସେ ଡାଳ ଭାଙ୍ଗୁଛି
କହିଲେ ଟିକି ଚଢ଼େଇ
ଲୋକ ହସା ଖାଲି ସାର ହେବ ସିନା
ଗର୍ବ ଅହଂକାର ପାଇଁ ।୪।
ଯାହା ତାହା ଯଦି ଲେଖିଦେଲେ କିଛି
ହେଇଯିବେ ସର୍ବେ କବି
ଯେତେ ବି ଜଳିଲେ ଖଦ୍ୟୋତ କେବେ
ହୋଇ ପାରିବକି ରବି ? ।୫।
ଯାହାର ଯେତିକି ବୁଦ୍ଧି ଜ୍ଞାନଶକ୍ତି
ବିଧାତା କରିଛି ସ୍ଥିର
ଅଜ୍ଞାନ ମଣିଷ ଅଯଥାରେ ଖାଲି
କରେ ଗର୍ବ ଅହଂକାର ।୬।
ଯିଏ ଯାହା ଯେତେ ବୁଦ୍ଧି ବଳେ ସେତେ
ଉପର ପାହାଚ ଚଢ଼େ
ପରଶ୍ରୀ କାତର ହୁଏ ଯିଏ ତାର
ବୁଦ୍ଧି ଖାଲି ଚିହ୍ନା ପଡ଼େ ।୭।

# ମହାମନା ଦାସରଥି
## (ଦାସିଆ ଅଜା)

ଆଖ୍ୟାତ ପଲ୍ଲୀ ଉଦୟ ପୁରରେ
ଜନ୍ମ ଗ୍ରହଣ କରି
ବିଖ୍ୟାତ କଲ ନିଜକୁ ଉତ୍କଳେ
ସାଧନାର ପଥବରି
ବୁଲି ବୁଲି ମାଗି ଭିକ୍ଷା
ବାଣୀ ଭଣ୍ଡାର ଓ ସଂଗ୍ରହାଳୟ
କରିବାକୁ ନେଲ ଦୀକ୍ଷା ।୧।
ଆଣ୍ଠୁ ନଲୁଚିବା ଗାମୁଛା ଖଣ୍ଡିଏ
ମହାତ୍ମାଗାନ୍ଧିଙ୍କ ସମ
ପରିଧାନ କରି ମଥାରେ ବାନ୍ଧିଲ
ଗାମୁଛା ଅନ୍ୟତମ
ଠେଙ୍ଗାଟିଏ ହାତେ ଧରି
ସଂଗ୍ରହ କଲ ପୋଥି ଓ ପୁସ୍ତକ
ଗ୍ରାମରୁ ଗ୍ରାମକୁ ବୁଲି ।୨।
ସାରା ଓଡ଼ିଶାରେ ପତାଇଲ ହାତ
ଭିକ୍ଷୁକ ବେଶ ଧରି
ଅମୂଲ୍ୟ ସଂପଦ ଠୁଲ କଲ ଆଣି
କୁବେର ଭଣ୍ଡାର ପରି
"ବାଞ୍ଛାନିଧି ପାଠାଗାର"
"ଅରବିନ୍ଦ" ନାମେ ସଂଗ୍ରହାଳୟ
ଅଦ୍ୱିତୀୟ ଓଡ଼ିଶାର ।୩।
ପତ୍ର ପତ୍ରିକାରେ ଲେଖାଟିଏ କାର
ଦେଖିଲା ମାତ୍ରକେ ସଦା

## ଶ୍ରଦ୍ଧାଞ୍ଜଳି

ପୋଷ୍ଟ କାର୍ଡ଼ ଟିଏ ଲେଖି ପକାଇବା
କାମଥିଲା ଧରାବନ୍ଧା
"ସୁନ୍ଦର ହୋଇଛି ଲେଖା"
ଅବ୍ୟାହତ ରଖ ଲେଖନୀ ଚାଳନା
କର ଥରେ ଆସି ଦେଖା ।୪।
ଯେତେ ସାହିତ୍ୟିକ, କବି ଓ ଲେଖକ,
ଲେଖିକାମାନଙ୍କ ସହ
ସଂପର୍କ ସ୍ଥାପନ କରି ଭରି ଦେଲ
ଲେଖନୀ ଚାଳନା ମୋହ
ଆଶୀର୍ବାଦ ଢାଳି ଦେଇ
ରହିଗଲ ତୁମେ କବି ହୃଦୟରେ
ପ୍ରେରଣାର ଉତ୍ସ ହୋଇ ।୫।
ନଦେଖିବେ କେହି ନଜାଣିବେ କେହି
ନକାନ୍ଦିବେ ଥରେ କେହି
ଚାଲିଯିବି ପ୍ରଭୁ ଦୁନିଆଁରୁ ମୁହିଁ
ତୁମ ନାମ ଗାଇ ଗାଇ
କହିଥିଲ ଏହା ତୁମେ
ସେମିତି ତ ଆହା ଚାଲିଗଲ ତୁମେ
କାନ୍ଦୁଅଛୁ ଝୁରି ଆମେ ।୬।
ଚାଲିଗଲ ତୁମେ ଦୁନିଆଁରୁ ସିନା
ତୁମ କଲା କର୍ମ ମାନ
ସ୍ମରଣ ରହିବ ସମଗ୍ର ଉତ୍କଳ
ବାସୀଙ୍କର ଚିରଦିନ
ବିଭୁ ପଦେ ଏ ପ୍ରାର୍ଥନା
ଅମର ରହିବ ଚିରଦିନ ତୁମେ
ଦାସରଥି ମହାମନା ।୭।

# ମରିନାହିଁ ସେ ତ ମରିନାହିଁ

ମରିନାହିଁ ସେ ତ ମରିନାହିଁ
ଯୁଗ ଯୁଗକୁ ସେ ରହିବ ଅମର
ମରଣକୁ ସେ ତ ଡରିନାହିଁ ।୧।

ମରିନାହିଁ ସେ ତ ମରିନାହିଁ
ଚାଲିଗଲା ବୋଲି ଶୁଣିବା ମାତ୍ରକେ
କା, ଆଖିରୁ ଲୁହ ଝରିନାହିଁ ।୨।

ମରିନାହିଁ ସେ ତ ମରିନାହିଁ
ସାରା ଓଡ଼ିଶାରେ ମାଗି ମାଗି ଭିକ୍ଷା
କେତେ ବଡ଼ କାମ କରିନାହିଁ ।୩।

ମରିନାହିଁ ସେ ତ ମରିନାହିଁ
ଅମୂଲ୍ୟ ସଂପଦ ଠୁଳ ସେ କରିଛି
କଷ୍ଟକରି ତିଳେ ହାରି ନାହିଁ ।୪।

ମରିନାହିଁ ସେ ତ ମରିନାହିଁ
ମହୁମାଛି ପରି ସଂଚି ସେ ଯାଇଛି
ନିଜ ପେଟ ସେ ତ ଭରିନାହିଁ ।୫।

ମରିନାହିଁ ସେ ତ ମରିନାହିଁ
କବି ଲେଖକଙ୍କୁ ପ୍ରେରଣା ଦେଇଛି
କେ, ଅଛି ତା ସମ ସରି କାହିଁ ।୬।

ମରିନାହିଁ ସେ ତ ମରିନାହିଁ
କୋଣାରକଟିଏ ଗଢ଼ି ସେ ଯାଇଛି
"ମୋର ବୋଲି" ମୁଖେ ଧରି ନାହିଁ ।୭।

ମରିନାହିଁ ସେ ତ ମରିନାହିଁ
ତା, ବାଟରେ ସିଏ ଚାଲିଗଲା ଦିନେ
ମାନ ସମ୍ମାନ ସେ ବରି ନାହିଁ ।୮।

ମରିନାହିଁ ସେତ ମରିନାହିଁ
ଖୁଣ୍ଟା ତଡ଼ାରଙ୍ଗା, ସେ ଦାସିଆ ଅଜା,
ବଂଚିଥିବ ଚିର ଦିନ ପାଇଁ ।୯।

# କଲେଜ ଛକର ଝିଅ

ଡଉଲ ଡାଉଲ ଚେହେରା ସୁନ୍ଦର
ଗୋରା ତକ ତକ ଦିହ ।
ନବମ ଶ୍ରେଣୀରେ ପାଠ ପଢୁଥିଲା
କଲେଜ ଛକର ଝିଅ ।୧।

ସ୍କୁଲ ପାଠଠାରୁ ଅପଢ଼ା ପାଠରେ
ଏକ୍ସପର୍ଟ୍ ସିଏ ଥିଲା
ବୟସ ମାତର ଷୋହଳ ସତର
ନିରୁଦ୍ଦିଷ୍ଟ ଦିନେ ହେଲା ।୨।

ଡିବି ଡିବି ହେଲା ଚହଳ ପଡ଼ିଲା
ରାସ୍ତାଘାଟ ଗାଁ ସାରା
ନେଇ ଚାଲିଗଲା ଟୋକା ଗୋଟେ କିଏ
ବିବାହ କରିବ ପରା ? ।୩।

ଥିଲା ଅନ୍ୟ ଏକ ପୂର୍ବର ପ୍ରେମିକ
ଥାନାରେ ଦେଲା ଏତଲା
ପୋଲିସ ଆସିଲା ଛାନ୍‌ଭିନ୍ କଲା
ଟେର୍ କିଛି ନ ମିଳିଲା ।୪।

ଦେଢ଼ବର୍ଷ ପରେ ସୁରାକ ପାଇଡା
ପୋଲିସ୍ ଗିରଫ କଲା
ଜେଲ୍ ପଠାଇଲା ଅପହୃତକକୁ
'ଅପହୃତା' ଛାଡ଼ି ଦେଲା ।୫।

ନାବାଳିକା ଭାବେ ସୁଧାର ଗୃହରେ
ରହି କିଛି ଦିନ ଅନ୍ତେ
ଘରକୁ ଫେରିଲା କିଛି ନ ଜାଣିଲା
ପରି ଝିଅ ରିକ୍ତ ହସ୍ତେ ।୬।

ଦେଢ଼ବର୍ଷର ତା ତିକ୍ତ ଅଭିଜ୍ଞତା
ନକରି ମନେ ଶୋଚନା

## ଶୁଡେଇର ବିତି

ଅତି ଆରାମରେ    କଲେଜ ଛକରେ
ବୁଲେ ନୋହି ଆନମନା ।୭।
ହସ ହସ ମୁହଁ    ଗୋଲ ଗାଲ ଦେହ
ସୌନ୍ଦର୍ଯ୍ୟ ଅଛି ଅତୁଟ
ପ୍ରଥମ ପ୍ରେମିକ    ପ୍ରେଜେଣ୍ଟ ଦୈନିକ
ନାଁବାଳିକା ସନ୍ନିକଟ ।୮।
କମେଣ୍ଟ କରନ୍ତି    ହସିକି ଉଡ଼ାନ୍ତି
ଜାଣିବା ଶୁଣିବା ଜନେ
ଲାଜ ଶର୍ମ ତେଜି    ପର ପ୍ରେମେ ମଜି
ଅଛନ୍ତି ସେ ନିତି ଦିନେ ।୯।
ପରକୀୟା ପ୍ରୀତି    ମଧୁର ଏତେକି
ଭୁଲିଯାଆନ୍ତି ସମ୍ମାନ
ଗୃହେ ନିଜ ପତ୍ନୀ    ଥାଇ ବି କରନ୍ତି
ବିଟପୀ ଗୃହେ ଗମନ ।୧୦।
ଅଳପ ବୟସୀ    ଷୋଡ଼ସୀ ରୂପସୀ
ପିଞ୍ଜୁବଳା ସମ ଦିହ
ଅପ୍ସରାକୁ ଜିଣି ମନ ନିଏ କିଣି
କଲେଜ ଛକର ଝିଅ ।୧୧।



# ମହାମାରୀ କରୋନା

ଭଲା ମହାମାରୀ କରୋନା ଆସିଲା
ଦୁନିଆଟା ସାରା ଗ୍ରାସିଲା
ଚୀନ୍ ଉହାନରୁ ସୃଷ୍ଟି ହୋଇଲା ଯେ
ଶହ ଶହ ଦେଶ ଭାଷିଲା ॥୧॥

ଜନ ସଂଖ୍ୟା ବୃଦ୍ଧି ହୋଇବାରୁ ଅତି
ପୋକ ଜୋକ ଖାଦ୍ୟ ରସିଲା,
ସାମୁଦ୍ରିକ ଜୀବ ବଜାର ବୁହାନ୍
ଠାରୁ ଏ କରୋନା ବାସିଲା ॥୨॥

ଥଣ୍ଡା, ଜ୍ୱର ଆଉ ନିଶ୍ୱାସରେ କଷ୍ଟ
ଖୁଁ ଖୁଁ ଯିଏ କାସିଲା
ଅତୀବ ଉନ୍ନତ ଦେଶ ମାନଙ୍କର
ଚିକିତ୍ସାରେ ପାଣି ପଶିଲା ॥୩॥

ଚାହୁଁ ଚାହୁଁ ମାଡ଼ିଗଲା ପୃଥିବୀରେ
ଆକ୍ରାନ୍ତ ଯେ ହେଲା ଫସିଲା,
ନା ପ୍ରତିକାର ନା ପ୍ରତିଷେଧ
ସତର୍କ ଯେ ହେଲା ଖସିଲା ॥୪॥

ଧନ, ବଳ, ଗର୍ବ କରୁଥିଲେ ଯିଏ,
ପ୍ରକୃତି ସବୁଙ୍କୁ ନାଶିଲା ,
ମହାକାଳ ଗର୍ଭେ ହଜାର ହଜାର
ମାନବର ମୁଣ୍ଡ ଭାସିଲା ॥୫॥

ରକ୍ଷା ସେ ପାଇଲା, ବାହାରେ ନ ବୁଲି
ମାସ୍କ ପିନ୍ଧି ଘରେ ବସିଲା
ବେଶୀ ମିଳା ମିଶା କା ସଙ୍ଗେ ନକରି
ଦୂରତ୍ୱକୁ ଯିଏ ରସିଲା ॥୬॥

ଗର୍ବ, ଅହଂକାର ରହେନି କାହାର
ଏବେ, ଚୀନ୍‌ର ଚେତା ପଶିଲା
ସାରା ଦୁନିଆରେ ଆତଙ୍କ ଖେଳାଇ
ଲାଜ ସରମରେ ବସିଲା ॥୭॥
କ୍ଷୀର ଉତୁରିଲେ ଚୁଲିକି ରେ ଭାଇ
ମଣିଷ ଗାତରେ ପଶିଲା
ପ୍ରକୃତିଠୁ କେହି ବଡ଼ ନୁହେଁ ଭାଇ,
ବେଳ ଉଣ୍ଡି ବିଧା କଷିଲା ॥୮॥
ସାବଧାନ ହୁଅ, ସଚେତନ ହୁଅ
ଏବେ, ସତର୍କତା ବେଳ ଆସିଲା,
ରକ୍ଷା ସେ ପାଇବ, ଘରେ ବସି ଯିଏ
ସାବୁନରେ ହାତ ଘଷିଲା ॥୯॥



# ରଜା ପୁଅ, ରଜାଝିଅ ଓ ବୁଢ଼ୀ ଅସୁରୁଣୀ

ଅଗନା ଅଗନୀ ବନସ୍ତରେ ଏକ
ଥିଲା ବୁଢ଼ୀଅସୁରୁଣୀ
ରୂପ ବଦଳାଇ ପାରୁଥିଲା ସିଏ
କରି ତନ୍ତ୍ର ମନ୍ତ୍ର ଗୁଣୀ ।୧।
ବାଘକୁ ଛେଳି ସେ ହାତୀକୁ ବିଲୁଆ
ମନ୍ତ୍ର ବଳେ କରିଦିଏ
ମଣିଷ ଓ ପଶୁ ଯାହା ପାଏ ତାହା
ଜୀବନରେ ମାରି ଖାଏ ।୨।
ଯେତେ ବଳବାନ ପୁରୁଷ ହେଲେ ବି
ମୋଡ଼ିଦିଏ ତାର ଷଣ୍ଢ
କେତେ ରଜାପୁଅ ମାରିବାକୁ ଆସି
ରହିଛନ୍ତି ହୋଇ ମେଣ୍ଢା ।୩।
ଅମର ହୋଇ ସେ ବଞ୍ଚିବା ପାଇଁ କି
ଚିନ୍ତା କଲା ମନେ ମନେ
ନିଜର ଜୀବନ ନାଟିକାକୁ ବୁଢ଼ୀ
ଭଅଁରଟେ କଲା ଦିନେ ।୪।
ସୁନା ଫରୁଆରେ ପୁରାଇ ଭଅଁର
ସାତ ନିବୁଜ ବାକ୍ସରେ
ଅନ୍ୟ ଏକ ବନେ ବେଣ୍ଟ ପୋଖରୀରେ
ରଖିଲା ନେଇ ଗୁପ୍ତରେ ।୫।
ଯେଉଁ ରଜାପୁଅ ପୋଖରୀରେ ପଶି
ସାତ ତାଳ ପଙ୍କ ପାଣି
ତଳେ ଥିବା ସୁନା ଫରୁଆ ଭଅଁର
ଏକା ଚୋଟେ ଦେବ ହାଣି ।୬।

ତେବେ ଅସୁରୁଣୀ ବୁଢ଼ୀ ମୃତ୍ୟୁ ହେବ
ଜୀବନ ନାଟିକା ଛାଡ଼ି
ଅସମ୍ଭବ ଭାବି ଅସୁରୁଣୀ ବୁଢ଼ୀ
ଅହଙ୍କାରେ ଥାଏ ବୁଡ଼ି ।୭।
ରଜା ଝିଅ ଏକ ଅତୀବ ସୁନ୍ଦରୀ
ବନ ବିହାରର ପାଇଁ
ସହଚରୀ ମେଳେ ସେ ବନ ପ୍ରଦେଶେ
ପ୍ରବେଶ ହୋଇଲା ଯାଇ ।୮।
ବନ୍ଦୀକରି ସବୁ ସହଚରୀ ସହ
ରଜା ଝିଅକୁ ସେ ଦିନେ
ଖାଦ୍ୟ ଅନ୍ୱେଷଣେ ବନ ଅଭ୍ୟନ୍ତରେ
ଯାଇଥିଲା ସନ୍ତର୍ପଣେ ।୯।
ରଜାଝିଅ ଦିନେ ପଚାରିଲା ବୁଢ଼ୀ
ଅସୁରୁଣୀ ମୃତ୍ୟୁ ଭେଦ
ଅଜାଣତେ ବୁଢ଼ୀ ଦେଇଥିଲା କହି
ଲାଗିଥିଲା ବେଳେ ନିଦ ।୧୦।
ରାଜାପୁଅ ଏକ ପାଉଥିଲା ଭଲ
ସେ ରଜା ଝିଅକୁ ଅତି
ଖୋଜି ଖୋଜି ଆସି ସେ ବନ ପ୍ରଦେଶେ
ପ୍ରବେଶ ହେଲା ଝଟତି ।୧୧।
ରଜାଝିଅଠାରୁ ଶୁଣି ସବୁ କଥା
ରଜାପୁଅ ଗଲା ବନେ
ଉଦ୍ଧାରିବା ପାଇଁ ରଜାଝିଅକୁ ସେ
ସାହାସ ବାନ୍ଧିଲା ମନେ ।୧୨।
ବୁଢ଼ୀ ଅସୁରୁଣୀ ଜୀବନ ନାଟିକା
ଥିଲା ସୁନା ଫରୁଆରେ
ସାତ ତାଳ ପଙ୍କ ପାଣି ତଳେ ସାତ
ନିବୁଜ ବାକ୍ସ ଭିତରେ ।୧୩।

ବେଣ୍ଟ ପୋଖରୀରେ ପଶି ରଜା ପୁଅ
ଆଣି ସୁନା ଫରୁଆକୁ
ଦୁଇ ଖଣ୍ଡକଲା ଏକ ଚୋଟେ ହାଣି
ସାତ ବାକ୍ସ ଭଅଁରକୁ ।୧୪।

ଭୟଙ୍କର ଗରଜନ କରି ବୁଢ଼ୀ
ଅସୁରୁଣୀ ମଲା ବନେ
ରଜା ଝିଅ ଧରି ସହଚରୀ ସହ
ରଜା ପୁଅ ଖୁସି ମନେ ।୧୫।

ନିଜ ରାଜ୍ୟେ ଯାଇ ବିବାହ ଉତ୍ସବ
ବହୁ ଆଡ଼ମ୍ବରେ କଲେ
ରଜାଝିଅ ମାତା, ପିତା ଆନନ୍ଦରେ
ବହୁ ଧନରତ୍ନ ଦେଲେ ।୧୬।

ରଜା ହୋଇ ନିଜ ରାଜ୍ୟେ ରଜାପୁଅ
ସୁଖରେ ପାଳିଲେ ପ୍ରଜା
ଧନ୍ୟ ଧନ୍ୟ କଲେ ରାଜ୍ୟବାସୀ ସବୁ
ଉଡ଼ାଇଲେ ରାଜ୍ୟେ ଧ୍ୱଜା ।୧୭।





# ଘୋଷ ଯାତ୍ରା

ବଡ଼ ଦେଉଳରୁ କାଳିଆ ସାଆନ୍ତ
ଭାଇ ଭଉଣୀଙ୍କୁ ଧରି,
କର୍ମଭୂମି ତେଜି ଜନ୍ମଭୂମି ଯାନ୍ତି
ନବଦିନ ଯାତ୍ରା କରି । ।୧।

ପତିତ ମାନଙ୍କ ଉଦ୍ଧାର ପାଇଁକି
ନିଳାଦ୍ରୀ ବିହାର ଛାଡ଼ି,
ଗୁଣ୍ଡିଚା ମନ୍ଦିରେ ଯାତ୍ରା କରିଥାନ୍ତି
ନନ୍ଦିଘୋଷ ରଥ ଚଢ଼ି । ।୨।

ଆଗେ ବଳଭଦ୍ର ମଧ୍ୟରେ ସୁଭଦ୍ରା
ପଛେ ପ୍ରଭୁ ଜଗନ୍ନାଥେ,
ଆଡ଼ପ ମଣ୍ଡପେ କରନ୍ତି ବିଜୟେ
ତିନି ଦିଅଁ ତିନି ରଥେ । ।୩।

ତାଳଧ୍ୱଜ ଦେବଦଳନ ରଥରେ
ଭାଇ ଭଉଣୀଙ୍କୁ ନେଇ,
ପତିତ ପାବନ ଦିଅନ୍ତି ଦର୍ଶନ
ଶରଧା ବାଲିରେ ଯାଇ । ।୪।

ହେରା ପଞ୍ଚମୀରେ ସଖୀ ଗହଣରେ
ଖୋଜିଯାନ୍ତି ଲକ୍ଷ୍ମୀ ମାତ,
ଶରଧାବାଲିରେ ନନ୍ଦିଘୋଷ ଦେଖି
କ୍ରୋଧେ ଭାଙ୍ଗିଦ୍ୟନ୍ତି ରଥ । ।୫।

ଗୁଣ୍ଡିଚା ମନ୍ଦିରେ ସାତଦିନ ପରେ
କରନ୍ତି ବାହୁଡ଼ା ବିଜେ,

ପଥରେ ରଥରେ ମାଉସୀ ହସ୍ତରେ
ପୋଡ଼ପିଠା ଖାନ୍ତି ସେ ଯେ । ।୬।
ଏକାଦଶୀତିଥେ ସୁନାବେଶେ ରଥେ
ଭକ୍ତଙ୍କୁ ଦେଇ ଦର୍ଶନ,
ପାପୀମାନଙ୍କର କୋଟି ଜନମର
ପାପ କରନ୍ତି ମୋଚନ । ।୭।
ଘୋଷ ଯାତ୍ରା ସାରି ନିଳାଦ୍ରୀ ବିହାରୀ
ନିଳାଦ୍ରୀ ବିଜେ କରନ୍ତି,
ରସଗୋଲା ଦେଇ ପ୍ରଭୁ ଲକ୍ଷ୍ମୀ ସାଇଁ
ଲକ୍ଷ୍ମୀଙ୍କ ମାନ ହରନ୍ତି । ।୮।
ଜଗତରନାଥ ପ୍ରଭୁ ଜଗନ୍ନାଥ
ପତିତ ପାବନ ହରି,
ଦୁଃଖୀ ଜନଙ୍କର ଦୁଃଖ କର ଦୂର
ବଡ଼ ଦାଣ୍ଡେ ଯାତ୍ରା କରି ।୯।





# ପୂଣ୍ୟ ନୀଳାଚଳ

ମହୋଦଧି କୂଳେ ପୂଣ୍ୟ ନୀଳାଚଳେ
ନୀଳ କନ୍ଦରରେ ନିଳାଦ୍ରୀ ନାଥ,
ବରଷକେ ଥରେ ବିଜୟ ରଥରେ
ପତିତ ତାରଣେ ଗୁଣ୍ଡିଚା ଯାତ । ।୧।

ଜଗତର ନାଥ, ପ୍ରଭୁ ଜଗନ୍ନାଥ
ଜ୍ୟେଷ୍ଠ ଭ୍ରାତା ଭଗ୍ନୀ ଧରି ସଂଗତ ,
"ଦାରୁବ୍ରହ୍ମ" ରୂପେ ଶ୍ରୀ ପୁରୁଷୋତ୍ତମ
ଶ୍ରୀକ୍ଷେତ୍ରେ ପୁଜିତ "ବିମଳା" ସାଥ ।୨।

ପୂଣ୍ୟ ଶଂଖକ୍ଷେତ୍ର ପବିତ୍ର ଶ୍ରୀକ୍ଷେତ୍ର
ନୀଳାଚଳ ଧାମ,ନୀଳ କନ୍ଦର
ଜଗନ୍ନାଥ ଧାମ, ପୂଣ୍ୟ ପୁରୀ ଧାମ
ଗତିମୁକ୍ତି ଧାମ ସାରା ବିଶ୍ୱର । ।୩।

ପବିତ୍ର ଶ୍ରୀକ୍ଷେତ୍ର "ପୁରୀ ଜଗନ୍ନାଥ"
ସମଗ୍ର ବିଶ୍ୱରେ ମାନ୍ୟତା ପ୍ରାପ୍ତ,
ସର୍ବତ୍ର ବିଦିତ ସର୍ବତ୍ର ପୂଜିତ
ଜଗତର ନାଥ ଶ୍ରୀ ଜଗନ୍ନାଥ । ।୪।

ଭକ୍ତ ସାଲବେଗ କବିର ଚୈତନ୍ୟ
ରାମାନନ୍ଦ ଆଉ ଶଙ୍କରାଚାର୍ଯ୍ୟ
ଦ୍ୱୈତମତବାଦୀ ଶ୍ରୀ ଭାସ୍କର ଆଉ
ଦ୍ୱୈତାଦ୍ୱୈତବାଦୀ ନିମ୍ବାର୍କାଚାର୍ଯ୍ୟ । ।୫।

ପତିତ ପାବନ ପ୍ରଭୁ ଦାରୁବ୍ରହ୍ମ
ଦର୍ଶନେ ମୁକତି କାମନା କରି

କୃତ କୃତ୍ୟ ହୋଇ ଆତ୍ମ ଶାନ୍ତି ପାଇ
ଅନ୍ତିମେ ଅଛନ୍ତି ବ୍ରହ୍ମକୁ ବରି । ।୬।

ପୁରୀ ବଡ଼ଦାଣ୍ଡ ପୁରୀ ସିଂହଦ୍ୱାର
ବାଇଶି ପାହାଚ, କଳପବଟ
ପୁରୀ ଶ୍ରୀ ମନ୍ଦିର ପୁରୀ ମହୋଦଧି,
ଆନନ୍ଦ ବଜାର-ଅବଡ଼ା ହାଟ । ।୭।

ଧନ୍ୟ ପୁରୀକ୍ଷେତ୍ର ପବିତ୍ର ଶ୍ରୀକ୍ଷେତ୍ର
ଶ୍ରୀ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ,
ଚାରିଧାମ ମଧ୍ୟେ ସର୍ବଶ୍ରେଷ୍ଠ ଧାମ
କଳିଯୁଗେ ବୌଦ୍ଧ ରୂପେ ପୂଜିତ । ।୮।



ଶ୍ରୀ ଚରଣେ ଦିଅ ଶରଣ

## ଶ୍ରୀ ଚରଣେ ଦିଅ ଶରଣ

(ରାଗ ରେଖ୍ତା)

ଜୟ ଜୟ ଜଗନ୍ନାଥ, ଅନାଥ ଜନର ନାଥ
ଦୁଃଖୀ ଦୁଃଖ ହାରୀ ପ୍ରଭୁ ଆରତ ତ୍ରାଣ,
ଭାସୁଛି ଭବ ସାଗରେ, ଜୀବନ ଶେଷ ଭାଗରେ
ତ୍ରାହିକର ଦୀନ ଜନେ ଗଲି ଶରଣ,
ଦୟାକର ଦୟା ସାଗର
ନିର୍ଦ୍ଦୟ ନହୁଅ ପ୍ରଭୁ କଳାଠାକୁର । ।୧।

କୃପାକର କୃପାସିନ୍ଧୁ, ଆହେ ଦୀନ ଜନ ବନ୍ଧୁ,
ତୁମ୍ଭ ବିନା ସାହା କେହି ନାହିଁ ମୋହର,
ତୁମ୍ଭେ ନକଲେ କରୁଣା, ଅରକ୍ଷ ହେବି ମୁଁ ସିନା
ଭରସା କରିଛି ଏକା ତୁମ ପୟର
କୃପା ନେତ୍ରେ ଦିଅ ଅନାଇଁ
ଦାସିଆ ନଡ଼ିଆ ନେଲ ହାତ ବଢ଼ାଇ । ।୨।

ରଥରେ ଦର୍ଶନ ପାଇଁ, ସାଲବେଗ ଦୂରେ ଥାଇ
ଡାକିଲେ ଆତୁରେ ରଥ ରଖିଲ ସ୍ଥିର,
ଭକ୍ତ ବଳରାମ ଦାସ, ଭକ୍ତି ଭରେ ହୋଇ ତୋଷ
ବାଲି ରଥରେ ରହିଲ ସାଗର ତୀର,
କେତେ କେତେ ଭକ୍ତଙ୍କ ମାନ
ରକ୍ଷା କରିଅଛ ପ୍ରଭୁ ଚକାନୟନ । ।୩।

ବନ୍ଧୁ ମହାନ୍ତିର ବନ୍ଧୁ ହୋଇଛ ହେ ଦୀନବନ୍ଧୁ
ବଞ୍ଚାଇଛ ଦେଇ ତାକୁ ଅନ୍ନ ବ୍ୟଞ୍ଜନ,
ମୁଁ ଅଧମ ଦୀନଜନ, ନାହିଁ ମୋର ଭକ୍ତି ଜ୍ଞାନ
ଆରତେ ଡାକୁଛି ବାରେ ଦିଅ ଶରଣ,
ଶ୍ରୀ ଚରଣେ ମୋ ନିବେଦନ
ମରଣ କାଳରେ ବାରେ ଦେବ ଦର୍ଶନ । ।୪।

# ନୟନେ ମୋ ନାଚୁଥାଉ, ତୋ ଚକା ନୟନ





ଜଗତର ନାଥ ପ୍ରଭୁ ଜଗନ୍ନାଥ
ଦୀନବନ୍ଧୁ ଦଇତାରୀ,
କରହେ କରୁଣା ହେବ ନାହିଁ ଊଣା,
ଦୟାସିନ୍ଧୁ ଦୁଃଖହାରୀ ।୧।

ମାଗୁନାହିଁ ଧନ, ମାଗୁନାହିଁ ଜନ
ମାଗୁନାହିଁ ସୁଖଶିରୀ
ଦିଅ ପଛେ ମୋତେ ଦୁଃଖ କଷ୍ଟ ଯେତେ
ଭବାର୍ଣ୍ଣବୁ କର ପାରି ।୨।

ବିତି ଯାଉ ଦିନ ଦୁଃଖେ ମୋ ଜୀବନ
ନୟନୁ ଝରାଇ ବାରି
ଜଗତ ଜୀବନ ହେ ଚକାନୟନ
ଚରଣେ ଆଶ୍ରୟ କରି ।୩।

ବରଷକେ ଥରେ ଦର୍ଶନ ରଥରେ
ଦିଅହେ ବାମନ ହରି
ପୁନର୍ଜନ୍ମ ଆଉ ମୋହର ନହେଉ,
ଶ୍ରୀମୁଖ ଦର୍ଶନ କରି ।୪।

ଅବଢ଼ା କୈବଲ୍ୟ,ପାଇ ତୋ ନିର୍ମାଲ୍ୟ
ଜୀବନ ଧନ୍ୟ କରିବି,
ବାର ମାସେ ତେର ଜାନିଯାତ୍ରା ତୋର
ଦେଖି ସଂସାରୁ ତରିବି ।୫।

ଏତିକି ମିନତି ଆହେ ଲକ୍ଷ୍ମୀପତି
ଆକସ୍ମିକ ମୃତ୍ୟୁ ହେଉ
ଯିବାବେଳେ ପ୍ରାଣ ତୋ ଚକାନୟନ
ନୟନେ ମୋ ନାଚୁଥାଉ ।୬।

ଏହି ଆଙ୍କ୍ଷା ହେଉ ଆହେ ମହାବାହୁ
ଆଉ କିଛି ଚାହେଁ ନାହିଁ
ଆଣି ନାହିଁ କିଛି ନେବି ନାହିଁ କିଛି
ଚାଲିଯିବି ଏକା ହୋଇ ।୭।

# ପରମ ବୈଷ୍ଣବୀ ଦେବୀ
# ବାସବୀ କନ୍ୟକା ପରମେଶ୍ୱରୀ

ଏକାଦଶ ଶତାବ୍ଦୀରେ ବୈଶ୍ୟଦଣ୍ଡ ଧାରୀ
ଓ୍ୱେଙ୍ଗିଦେଶେ ପେନୁଗୋଣ୍ଡା ରାଜଧାନୀ କରି
ପାଳୁଥିଲେ ବୈଶ୍ୟ ଗଣେ
କୁସୁମାମ୍ବା ରାଣୀ କୁସୁମ ଶ୍ରେଷ୍ଠି ରାଜା ନାମେ-୧
ଶିବ ଆରାଧନା ଥିଲା ଜୀବନର ବ୍ରତ
ନଥିଲା ସନ୍ତାନ ଯେଣୁ ଦମ୍ପତି ଦୁଃଖିତ
କୁଳଗୁରୁଙ୍କର ସହ
ପରାମର୍ଶ କଲେ ରାଜା କି କରିବା କହ -୨
ପୁତ୍ରପ୍ରାପ୍ତି ଯଜ୍ଞ ପାଇଁ, ପାଇ ଉପଦେଶ
ବିଧିବିଧାନରେ ଯଜ୍ଞ କଲେ ନରଈଶ
ଯଜ୍ଞ ଚରୁ ଦେଲେ ଆଣି
ଯାଆଁଳା ସନ୍ତାନ ଜନ୍ମ ଦେଲେ ଶୁଭେରାଣୀ-୩
ବାସବାମ୍ବା କନ୍ୟା ବିରୁପାକ୍ଷ ପୁତ୍ରନାମ
ଶିକ୍ଷାଦେଲେ କୁଳଗୁରୁ ସର୍ବଶାସ୍ତ୍ରମାନ
ସର୍ବକଳାରେ ନିପୁଣ
ହୋଇଥିଲେ ବାସବାମ୍ବା ସ୍ୱୟଂଶ୍ରୀ ସଂପୂର୍ଣ୍ଣ-୪
ବିଷ୍ଣୁବର୍ଦ୍ଧନ ନାମରେ ଅନ୍ୟ ଦେଶ ରାଜା
ପେନୁଗୋଣ୍ଡା ଜୟ ପାଇଁ ବଜାଇଲେ ବାଜା
ବାସବାମ୍ବା କନ୍ୟା ଦେଖି
ବିବାହ ପ୍ରସ୍ତାବ ଦେଲେ ହୋଇ ମହାସୁଖି-୫
ଏକେ ବିବାହିତ ପୁଣି ବୟସ ଅଧିକ
ଏଣୁ କରି ବାସବାମ୍ବା ହେଲେ ଅନିଚ୍ଛୁକ

ବିଷ୍ଣୁବର୍ଦ୍ଧନ କ୍ରୋଧିତ
ଆଦେଶିଲେ କନ୍ୟା ଆଣ, ହେ ବଳପୁର୍ବକ-୬
ବୈଶ୍ୟମାନେ କନ୍ୟା ଇଛାକଲେ ସମର୍ଥନ
ସ୍ଥିର କଲେ ଯୁଦ୍ଧେ ପ୍ରାଣ ଦେବେ ବିସର୍ଜ୍ଜନ
ବାସବାମ୍ବା ମର୍ମାହତ
ମୋ ପାଇଁକି ବୈଶ୍ୟକୁଳ ହେବେ କିମ୍ପା ହତ-୭
ଗୋଦାବରୀ ନଦୀତଟ ବ୍ରହ୍ମକୁଣ୍ଡ ସ୍ଥାନେ
ମାଘଶୁକ୍ଳ ଦ୍ୱିତୀୟାର ଗୁରୁବାର ଦିନେ
ଅଗ୍ନିକୁଣ୍ଡେ ଝାସଦେଲେ
ସେହି ଦିନୁ ବାସବାମ୍ବା ଦେବୀ ହୋଇଗଲେ-୮
ଆତ୍ମତ୍ୟାଗେ ମହା ରକ୍ତପାତୁ ବୈଶ୍ୟକୁଳେ
ରକ୍ଷାକଲେ ବାସବାମ୍ବା ଅହିଂସାର ବଳେ
ହେଲେ ବାସବୀ କନ୍ୟାକା
ପରମେଶ୍ୱରୀ କରନ୍ତି ଭକ୍ତ ଗଣେ ରକ୍ଷା-୯
ଗୁପ୍ତଚରଠାରୁ ଶୁଣି ସମସ୍ତ ଘଟଣା
ବିଷ୍ଣୁବର୍ଦ୍ଧନର ବୁଦ୍ଧି ହୋଇଗଲା ବଣା
ରକ୍ତ କରିଣ ବମନ
ତତ୍‌କ୍ଷଣାତ୍ କଲା ସେ ଯେ ମୃତ୍ୟୁକୁ ବରଣ-୧୦
ବାସବାମ୍ବାଙ୍କ ଇଛାରେ ଆଲେରୁ ଗ୍ରାମର
ଆରିଧିଶ୍ରେଷ୍ଠିଙ୍କ କନ୍ୟା ରତ୍ନାବତୀ କର
ଧରି ବିବାହ ହୋଇଲେ
ଅତି ସୁଖେ ବିରୁପାକ୍ଷ ବୈଶ୍ୟଙ୍କୁ ପାଳିଲେ-୧୧
ବାସବାମ୍ବା ବିଗ୍ରହକୁ ପ୍ରତିଷ୍ଠା କରାଇ
ରାଜରାଜ ନରେନ୍ଦ୍ର ଯେ ପୂଜା କଲେ ତହିଁ
ସେହିଦିନୁ କୁଳଦେବୀ
ବାସବାମ୍ବା ହେଲେ ବୈଶ୍ୟ ଆରାଧ୍ୟା ବାସବୀ-୧୨

ବୈଶ୍ୟକୁଳ ରକ୍ଷାକାରୀ ବାସବୀ କନ୍ୟାକା
ଭକ୍ତଗଣେ କରୁଛ ମା ଯୁଗେ ଯୁଗେ ରକ୍ଷା
କୃପାବାରି ବୃଷ୍ଟି କରି
ବିତରୁଛ ଧନଜନ ଆଉ ସୁଖ ଶିରୀ-୧୩

ନମୋ ମା ପରମେଶ୍ୱରୀ ନମୋ ମା ବାସବୀ
ଚରଣେ ଶରଣ ମାତ ପରମ ବୈଷ୍ଣବୀ
ସଦା କୃପାଦୃଷ୍ଟି ଥାଉ
ତୋତେ ଆଶ୍ରାକରି ସର୍ବଶୁଭେ ଦିନ ଯାଉ-୧୪





# କବିର ନାୟିକା

ଜୀବନର ସୁଖ ଆଉ ଦୁଃଖରେ
ତୁମେ ମୋର ଚିରସାଥି, ଚିର ସହଚରୀ,
ବଞ୍ଚିଛି ତୁମରି ପାଇଁ, ମରିବି ତୁମକୁ ନେଇ,
ହୃଦୟବଲ୍ଲଭୀ ମୋର ମନର ମାନସୀ,
ଆଙ୍କିଦିଏ ତୁମ ଗଣ୍ଡେ ଅଜସ୍ର ଚୁମ୍ବନ,
ବକ୍ଷରେ ମୋ ଚାପିଧରେ ନିବିଡ଼ ଆଶ୍ଳେଷେ,
ଆସ, ଆସ ସଖୀ, ନାୟିକା ଗୋ ମୋର,
ପ୍ରେମିକା ଗୋ ମୋର, ପ୍ରିୟତମା ମୋର,
ତୁମେକି ଜାଣନା ସତେ,
ମୁଁ ତୁମକୁ କେତେ ଭଲପାଏ ? ।୧।
କେତେ ନିଶି ଉଜାଗରେ ଚନ୍ଦ୍ରାଲୋକେ ଚାହିଁ
ନଦୀକୂଳେ ତୋଟାମାଳେ ନିର୍ଜନ ପ୍ରାନ୍ତରେ,
କରିଛି ପ୍ରତୀକ୍ଷା ସଖୀ, ତୁମ ଆଗମନେ,
ସିଞ୍ଚିବାରେ ସ୍ନେହାଶିଷ ବାରି,
ମୁଞ୍ଚିବାରେ ମୋବକ୍ଷ ପିପାସା,
ଆସ, ଆସ ସଖୀ, ସ୍ନେହମୟୀ, ପ୍ରେମମୟୀ,
ଶାନ୍ତି ପ୍ରାଦାୟିନୀ, ତୁମେ କି ଜାଣନା ସତେ,
ମୁଁ ତୁମକୁ ନିତି କେତେ ଖୋଜେ ? ।୨।
ଦୀର୍ଘ ଅବା ଖର୍ବକାୟ ଯାହା ତୁମେ ହୁଅ,
କୃଶ ଅବା ସ୍ଥୁଳ ତନୁ ହେଉ ପଛେ ତୁମ,
ମୋ ଆଖିରେ ତୁମେ ସତେ ଅତୀବ ସୁନ୍ଦରୀ,

ଅତି ମନୋରମା

ଆସ, ଆସ ସଖୀ, ଅୟି ସଜନୀ,
ବିଧୁବଦନୀ, ଗଜଗମନୀ,
ତୁମେକି ଜାଣନା ସତେ,
ମୁଁ ତୁମକୁ କେତେ ପ୍ରେମ କରେ ? ।୩।

ତୁମ ରୂପ, ତୁମ ମୂର୍ତ୍ତୀ, ତୁମ ମାଧୁରିମା,
ରାସ୍ତାଘାଟେ, ବନ୍ଧୁମେଳେ, ଶୟନେ ସପନେ,
ଆଖି ଆଗେ ନାଚିଯାଏ, ଚଳଚ୍ଚିତ୍ର ସମ,
ତୁମେ ମୋ ଜୀବନ ସଖୀ, ତୁମେ ମୋର ବଞ୍ଚିବାର ରାହା,
ତୃପ୍ତ ହେଉ ବାରେ ମୋର ଅନ୍ତର ବାସନା,
ତୃପ୍ତ ହେଉ ବାରେ ମୋର ମନର ରସନା,
ଆସ, ଆସ ସଖୀ, ମାନସୀ ଗୋ ମୋର,
ପ୍ରେୟସୀ ଗୋ ମୋର, ଶ୍ରେୟସୀ ଗୋ ମୋର,
ତୁମେ କି ଜାଣନା ସତେ,
ମୁଁ କେବଳ ତୁମ ପ୍ରୀତି ଇଛେ ? ।୪।

ହୋଇପାର ତୁମେ ସଖୀ ଅନ୍ୟର ନାୟିକା,
ହୋଇପାର ତୁମେ ଅବା ଅନ୍ୟର ପ୍ରେମିକା,
ତଥାପି ମୁଁ ତୁମର ପୂଜାରୀ,
ପାଗଳ ମୁଁ ନିରବଧି ତୁମ ଲାଗି ସଖୀ,
ପ୍ରାଣପ୍ରିୟା କବିତା ଗୋ କବିର ନାୟକା,
ଆସ, ଆସ ସଖୀ, ନାୟିକା ଗୋ ମୋର,
ପ୍ରେମିକା ଗୋ ମୋର, ପ୍ରିୟତମା ମୋର,
ତୁମେକି ଜାଣନା ସଖୀ,
କବିତାରେ ବଞ୍ଚିଛି ମୁଁ କବିତାରେ ମରିବି ? ।୫।

# ଅନାବିଳ ପ୍ରେମ

ହସି ହସି (ଅନୁନୟ ଭଙ୍ଗିରେ) ଥରେ ସେ ମୋତେ କହିଲା,
ମୋ ପାଇଁ ଗୋଟେ କବିତା ଲେଖି ଦେଇ ପାରିବ ?
ମୁଁ କହିଲି, ତୁ କ'ଣ ଦବୁ ?
ସେ କହିଲା, ତୁମେ କ'ଣ ଋହଁ ?
ମୁଁ କହିଲି,ମୁଁ ଯାହା ଋହା ଋହେଁ, ତୁ କ'ଣ ତାହା ଦେଇ ପାରିବୁ ?
ସେ କହଲା, ଯଦି ମୋ ପାଖରେ ଥିବ, ନିଶ୍ଚୟ ଦେବି ।
ମୁଁ କହିଲି, ତୋ ପାଖରେ ଥିବା ଦରବ ଅବଶ୍ୟ ମୁଁ ମାଗିବି ।
ନିଶ୍ଚୟ ଦବୁ ତ ? ସତ କହ ।
ସେ କହିଲା, ହଉ ହେଲା, କୁହ ।
ଏତେ ସହଜରେ ସେ ରାଜି ହେଇଯିବ, ମୁଁ ଭାବି ନଥିଲି ।
ଭାରି ଖୁସି ହୋଇଗଲି ଏବଂ କିଛି କହି ନ ପାରି ଚୁପ୍ ରହିଲି ।
ସେ କହିଲା, ତେବେ, କିଛି କହିଲନି ଯେ ?
ମୁଁ କହିଲି, କ'ଣ ଆଉ କହିବି ?
ସବୁ ଯଦି ଦବାକୁ ତୁ ପ୍ରସ୍ତୁତ, ତେବେ ତୁ କ'ଣ ଜାଣୁ ନଥିବୁକି ?
ସେ କହିଲା, ତୁମେ କ'ଣ ମୋର ସର୍ବନାଶ ଋହଁ ?
ମୋ ଦେହରେ ସତେ ଯେମିତି କରେଣ୍ଟ ଲାଗିଲା ।
ଅପ୍ରତିଭ ହୋଇ ମୁଁ କହିଲି, ନା, ନା ତା କେମିତି ହେବ ?
ସେ କହିଲା, ତେବେ ଆଉ ଡର କ'ଣ ?
ଅଧର ଓଷ୍ଠର କିଛି ମଧୁ ମଦିରା, ଟିକିଏ ସାନିଧ୍ୟ,
ବା କେଇ ଥର ନିବିଡ଼ ଆଶ୍ଳେଷ, କିମ୍ୱା ଦେହର ମିଳନ,
ଏଇ ତ ? କ'ଣ ବା ଅଛି ଏଇ କ୍ଷଣିକ ଉତ୍ତେଜନାରେ,
ଅନାବିଳ ସ୍ନେହ ଆଉ ପ୍ରେମ ସିନା ଚିରସ୍ଥାୟୀ ?
ମୁଁ ହତବାକ୍ ହେଲି ।

# ଅନ୍ୟ ଏକ ଲାବଣ୍ୟବତୀ

ମନେ ମନେ ତା'ର ଭାରି ଗର୍ବ,
ସେ ଏକ ସୁନ୍ଦରୀ ଗୋରୀ ଝିଅ ।
ସ୍ୱର୍ଗର ରମ୍ଭା, ମେନକା, ଉର୍ବଶୀ ପରି
ଅପରୂପ ରୂପ ଲାବଣ୍ୟ ତା'ର ।
ସୀତା, ସାବିତ୍ରୀ, ରାଧିକା ସୁନ୍ଦରୀ,
ଆଉ ଶ୍ରୀଦେବୀ, ଐଶ୍ୱର୍ଯ୍ୟା ଏବଂ ମାଧୁରୀ ଠାରୁ,
ସୁନ୍ଦରୀ ପଣରେ କିଛି କମ୍ ନୁହେଁ ସେ ।
କଲେଜରେ କେତେକ ତାକୁ ମୋହିନୀ କନ୍ୟା
ଡାକନ୍ତି ତ କେତେକ ଲାବଣ୍ୟବତୀ ।
ଲାବଣ୍ୟବତୀ କବିତା ଲେଖେ, ଗୀତ ଗାଏ, ଅଭିନୟ କରେ ।
ପ୍ରତ୍ୟେକ ପ୍ରତିଯୋଗୀତାରେ ପ୍ରଥମ ହୁଏ ।
ଅନେକ କମେଣ୍ଟ ଆଉ ଆଖି ଠାର,
ଅନେକ ଗଳା ଖଙ୍କାର ଆଉ ପ୍ରେମ ଚିଠି,
"ତମେ ବହୁତ ସୁନ୍ଦରୀ, ଆଇ ଲଭ୍ ୟୁ,"
ଇତ୍ୟାଦି ଅଜାଡ଼ି ହୋଇ ପଡ଼େ ତା ଉପରେ ।
ମନେ ମନେ ବିମୁଗ୍ଧ ହୁଏ "ଲାବଣ୍ୟବତୀ"
ନିରୋଳା ସମୟରେ ବସି ଭାବେ
ସତେ କେତେ ସୁନ୍ଦରୀ ସେ ?
କଳ୍ପନାର ଖିଅ ତା'ର ଲମ୍ବିଯାଏ
ଦୂରକୁ ଦୂରକୁ ।
ରୂପ ରାଇଜର ସୁନ୍ଦର ରାଜକୁମାରଟିଏ,
ପକ୍ଷୀରାଜ ଘୋଡ଼ାଚଢ଼ି ଆସିବ ।
ବିବାହ କରି ତାକୁ ନେଇଯିବ ସେଇଠିକି
ଯେଉଁଠି ଥିବ ଖାଲି,
ସ୍ନେହ, ପ୍ରେମ ଆଉ ଭଲ ପାଇବା ।
ସ୍ୱପ୍ନ ତା'ର ସାକାର ହୁଏ ।
ବି.ଏ. ପାସ୍ ପରେ, ବିବାହ କରେ ସେ,
ଏକ ଉଚ୍ଚ ପଦସ୍ଥ ଆଇ.ଏ.ଏସ୍ ଅଫିସରକୁ ।
କିନ୍ତୁ ସମସ୍ତ ସୁନେଲି ପରିକଳ୍ପନା ତା'ର



# ଘୁଙ୍ଗୁରର ଚିଠି

ଓଲଟ ପାଲଟ ହୋଇଯାଏ, ଦାମ୍ପତ୍ୟ ଜୀବନରେ ।
ସ୍ୱପ୍ନର ସୌଧ ତା'ର ଭାଙ୍ଗିରୁଜି-
ଚୁର୍‌ମାର୍ ହୋଇଯାଏ ।
ସ୍ୱାମୀ ତା'ର ବାର୍‌କୁ ଯାଏ, ମଦ ପିଏ,
କ୍ଲବ୍‌ରେ ବଲ୍‌ଡ୍ୟାନ୍ସ କରେ,
ଅନ୍ୟ ନାରୀ ସହ ଅବୈଧ ସଂପର୍କ ରଖେ ।
ଅର୍ଦ୍ଧ ରାତ୍ରିରେ ଘରକୁ ଫେରେ
ମାତାଲ ଅବସ୍ଥାରେ ।
ଅଯଥାରେ ଅଜସ୍ର ପାହାର କରେ ତାକୁ ।
ସମସ୍ତ ଯାନି ଯୌତୁକ
ବରାଦ ମୁତାବକ ଆଣିବା ସତ୍ତ୍ୱେ,
ସେ ଅସନ୍ତୁଷ୍ଟ ।
ସେ ସନ୍ଦେହ କରେ ତା'ର ଚରିତ୍ରକୁ,
ତା'ର ସତୀତ୍ୱକୁ, ତା'ର ନାରୀତ୍ୱକୁ ।
ସେ ନଷ୍ଟ ଚରିତ୍ରା, ସେ ଅସତି,
ସେ କଳଙ୍କିନୀ ।
ଅସହ୍ୟ ଯନ୍ତ୍ରଣାରେ ଛଟପଟ ହୁଏ,
ଲାବଣ୍ୟବତୀ ।
ଦୁଃସହ ଦୁଃଖରେ ଭାଙ୍ଗିପଡ଼େ ସେ,
ନିରୋଳାରେ ବସି ମନ ଭରି କାନ୍ଦେ,
ଭାଗ୍ୟକୁ ନିନ୍ଦା କରେ ।
ଆଖିରୁ ଅବିରତ ଲୁହ ଢାଳେ ।
ସମସ୍ତ ନିର୍ଯାତନା ନୀରବରେ ସହେ ।
ଈଶ୍ୱରଙ୍କୁ ଡାକେ, ହେ ଭଗବାନ୍,
ସୁନ୍ଦରୀ ହୋଇ ଜନ୍ମ ହେବା-
ତୁମ ସୃଷ୍ଟିରେ ଯଦି ଏକ ଅଭିଶାପ,
ମୁଁ ପଛେ ଅବିବାହିତ ରହେ,
ପର ଜନ୍ମରେ ମତେ ଏକ-
ଅସୁନ୍ଦରୀ କାଳିଝିଅ କରି
ଜନ୍ମ ଦିଅ ପ୍ରଭୁ ।



(ଏକ ସତ୍ୟ ଘଟଣା ଉପରେ ଆଧାରିତ ଉକ୍ତ କବିତା । ଲେଖକଙ୍କ ସହପାଠିନୀ କବିତାର ନାୟିକା)

# ଅଳି ଓ କଳି

ଫୁଲରାଣୀ, ଫୁଲରାଣୀ, ଉଠନା,
କ'ଣ ଯେ ଏତେ ବେଳଯାଏଁ ଶୋଇଛ ?
ସତରେ ଫୁଲରାଣୀ ତମେ ଭାରି ସୁନ୍ଦରୀ,
ତମର ନରମ ଚିବୁକ, କୋମଳ ବକ୍ଷ,
ସୁନ୍ଦର ରୂପ ଲାବଣ୍ୟ, ମୁଁ ଜମା ଭୁଲି ପାରୁନି ।
ଯାମ, ତମର ଖାଲି ସବୁବେଳେ ଏଇକଥା,
ସତରେ ଫୁଲରାଣୀ,
ତମଲାଗି ମୁଁ ସବୁବେଳେ ପାଗଳ ।
ଆସନା, ତମର ସେଇ ଗୋଲାପୀ ଅଧରରେ
ହସର ପାଖୁଡ଼ା ଟିକେ ଖୋଲ,
ହେଃ, କ'ଣ ଯେ ତମେ ଖାଲି
ସବୁବେଳେ ଏମିତି ହୁଅ ?
ଆଛା, ତାହାହେଲେ ମୁଁ ଚାଲିଲି ।
ମନେରଖ, ମତେ ବି ରାଗି ଆସେ ।
କେବେ ଯଦି ତମ ପାଖକୁ ଆଉ ଆସିଛି ?
ଆରେ, ଆରେ ସତରେ ତମେ,
ରାଗିଗଲ ନା କ'ଣ ଚାଲିଯାଉଛ ଯେ ?
ମୋ ରାଣ, ତମେ ଚାଲି ଯାଅନା ପ୍ରିୟତମ,
ତମ ବିନା ମୁଁ ଯେ ବଞ୍ଚି ପାରେନା,
ତମେ କି ଜାଣନା ପ୍ରିୟତମ,
ତମରି ପାଇଁ ଖାସ୍ ତମରି ପାଇଁ,
ମୋ ଅଙ୍ଗରେ ଏତେ ରୂପ, ଆଉ-
ମୋର ଏ ପୁଷ୍ପିତ ଯୌବନ ।
ଖାସ୍ ତୁମରି ପାଇଁ, ମୋ ଓଠରେ
ସର୍ବଦା ହସ ଫୁଟେ ।

କେବଳ ତୁମରି ପାଇଁ, ମୁଁ ନିଜକୁ-
ଏତେ ରୂପରେ ସଜାଏ ।
ତୁମେ କି ଜାଣନା ପ୍ରାଣପ୍ରୀୟ,
ତୁମ ବିନା ମୋ ଜୀବନ ନିରର୍ଥକ ?
ଆସ, ଆସ ପ୍ରିୟତମ ମୋର,
ମୋ ଓଠରୁ ମଧୁପାନ କରି
ଜୀବନ ଯୌବନ ମୋର ସାର୍ଥକ କର ।
ହାଃ, ହାଆ... ...(ବିଜୟ ଦର୍ପରେ ହସି ହସି)
ସତରେ ଫୁଲରାଣୀ ତମେ ଭାରି ଭଲ,
ଆସ, ଆସ ରାଣୀ ମୋର,
ତୁମ ନରମ ଚିବୁକରୁ ମଧୁପାନ କରି,
ତୃଷିତ ପ୍ରାଣ ମୋର, ଆତ୍ମ ସନ୍ତୋଷ
ଲାଭ କରେ ।
ଉହୁଁ ... ...
ଆରେ ଉହୁଁ, କ'ଣମ ଆସନା ?
ସତରେ ତମେ ଭାରି ଦୁଷ୍ଟ,
ଯେତେବେଳେ ତମେ ଆସନା ?
ତମର ଖାଲି ଏଇ କଥା ।



## ନିଆଁ ଜଳୁଛି

କେତେ ଯେ ଜଳୁଛି ନିଆଁ, ଦେଶ ବିଦେଶରେ
ପେଟ୍ରୋଲ, ଡିଜେଲ ଆଉ ଗ୍ୟାସ୍ ଓ କୋଇଲା ଖଣିରେ
ନିଆଁ ବି ଜଳୁଛି କେତେ, ଠାକୁର ମନ୍ଦିରେ, ଗୀର୍ଜାରେ,
ମସ୍‌ଜିଦ୍‌ରେ ଆଉ ଶ୍ମଶାନ ଭୂଇଁରେ ।
ଆଉ ବି ଜଳୁଛି ନିଆଁ ଦେଶେ ଦେଶେ,
ରାଜନୈତିକ ମହଲରେ ଦଳ ଦଳ ମଧ୍ୟେ ।
ଗାଁରେ ଜଳୁଛି ନିଆଁ ସହରେ ଜଳୁଛି,
ମନରେ ଜଳୁଛି ନିଆଁ, ଧନରେ ଜଳୁଛି ।
ପ୍ରେମରେ ଜଳୁଛି ନିଆଁ, କାମରେ ଜଳୁଛି
ଅର୍ଥରେ ଜଳୁଛି ନିଆଁ, ଅନର୍ଥେ ଜଳୁଛି ।
ଭୋଗରେ ଜଳୁଛି ନିଆଁ, ଲୋଭରେ ଜଳୁଛି
ହିଂସାରେ ଜଳୁଛି ନିଆଁ, ଦ୍ୱେଷରେ ଜଳୁଛି ।
ଯୌତୁକ ନିଆଁ ଜଳୁଛି, ଭୌତିକ ନିଆଁ ଜଳୁଛି
ଜଳୁଛି ସଂତ୍ରାସ ନିଆଁ, ଜଳୁଛି ଜଳିବ
ଏମିତି ଜଳି ଜଳି ଏ ପୃଥିବୀ ଦିନେ ଧ୍ୱଂସ ପାଇଯିବ ।
ଭୋପାଳରେ ଜଳିଲା ଦିନେ ପଞ୍ଚାଅଶୀ ଗ୍ୟାସ୍ ଦୁର୍ଘଟଣାରେ
ଆଉ ବି ଜଳିଥିଲା ହରିଆଣା ଡାବୋଲିରେ
ପଞ୍ଚାନବେ ସ୍କୁଲ ଉତ୍ସବରେ ।
ବାରିପଦା ମଧୁବନେ ଜଳିଲା ଦିନେ
ନିଗମାନନ୍ଦ ଭକ୍ତ ସମାବେଶେ
ତାଞ୍ଜାଭୁରରେ ଜଳିଲା ପୁଣି
ବୃହଦୀଶ୍ୱର ମନ୍ଦିର ପ୍ରାଙ୍ଗଣେ ।



ମକ୍କାରେ ଜଳିଲା ଦିନେ
ହଜ୍ ଯାତ୍ରୀ ତମ୍ବୁ ମାନଙ୍କରେ
ଦିଲ୍ଲୀରେ ଜଳିଲା ପୁଣି
ଉପହାର ସିନେମା ହଲ୍‌ରେ
ଆମେରିକାରେ ଜଳିଲା ଦିନେ
ବିଶ୍ୱ ବାଣିଜ୍ୟ ଟାୱାରରେ ।
ଏକା ଦିନେ ତିନି ସ୍ଥାନେ ଜଳିଲା ପୁଣି
ବ୍ରିଟେନ୍ ସହରେ ।
ଆଫ୍‌ଗାନିସ୍ଥାନ ଜଳିଲା ପୁଣି
ଇରାକ ଜଳିଲା
ମୁମ୍ବାଇ ଟ୍ରେନ୍ ଜଳିଲା ପୁଣି
ଗୋଧ୍ରାରେ ଟ୍ରେନ୍ ବି ଜଳିଲା ।
କାଶ୍ମୀର ଜଳୁଛି ପୁଣି ପଶ୍ଚିମବଙ୍ଗର ସିଙ୍ଗୁର ଜଳିଛି ।
କେନିଆ ଜଳିଛି ପୁଣି ପାକିସ୍ଥାନ ଜଳୁଛି,
ଓଡ଼ିଶାର କନ୍ଧମାଳ ଜଳିଛି ଆଉ ସମ୍ବଲପୁର ଭୂଷଣ ଷ୍ଟିଲ୍ କମ୍ପାନୀ
ଜଳିପୋଡ଼ି ଧ୍ୱଂସ ହୋଇଯାଇଛି ।
ଜଳୁଛି ହିଂସାର ନିଆଁ କେତେ କାହିଁ
କିଏ ତା'ର ରଖୁଛି ହିସାବ, ସ୍ୱାର୍ଥ ଆଉ ଅର୍ଥ ପାଇଁ
ଅନ୍ଧ ଆଜି ଏ ମଣିଷ, ଏମିତି ଜଳି ଜଳି ଧ୍ୱଂସ ପାଇଯିବ ।



# ଆଦିକବି ଶାରଳା ଦାସ

ଜଗତସିଂହପୁର ଝଙ୍କଡ଼ ନିକଟ
କନକ ବତୀ ପାଟଣା
କ୍ଷୁଦ୍ରଗ୍ରାମ ଏକ ତେନ୍ତୁଳିଆ ପଡ଼ା
ନାମେ ଏବେ ଜଣାଶୁଣା ।୧।

ସାଧାରଣ ଏକ ଚଷା ପରିବାରେ
ଜନ୍ମ ସିଦ୍ଧେଶ୍ୱର ନାମେ
ମାଆ ଶାରଳାଙ୍କ କୃପାରୁ କବିତ୍ୱ
ପ୍ରାପ୍ତ ଶାରଳାଙ୍କ ଧାମେ ।୨।

ଶାରଳାଙ୍କ ଦାସ ବୋଲି ସେ ନିଜକୁ
ଶାରଳା ଦାସ ନାମରେ
ବିଖ୍ୟାତ ହୋଇଲେ ଶୂଦ୍ରମୁନି ପଦ
ପାଇ ଲୋକ ଲୋଚନରେ ।୩।

ଓଡ଼ିଆ ଭାଷାରେ ପ୍ରଥମେ ରଚନା
କରିବାରୁ ତିନି ଗ୍ରନ୍ଥ
"ଆଦିକବି" ଭାବେ ଖାତି ସେ ଲଭିଲେ
ମହାନ୍ ଓଡ଼ିଆ ସନ୍ଥ ।୪।

ଶିକ୍ଷାଗତ କିଛି ଯୋଗ୍ୟତା ନଥାଇ
ତାଳପତ୍ର ଲେଖନୀରେ
"ମହାଭାରତ" ଓ ପୁରାଣ ରଚନା
କଲେ ଓଡ଼ିଆ ଭାଷାରେ ।୫।

"ଚଣ୍ଡି ପୁରାଣ" "ବି- ଲଙ୍କା ରାମାୟଣ"
"ମହାଭାରତ" ରଚିଲେ
ଓଡ଼ିଆ ଜାତିର ଚିର ନମସ୍ୟ ସେ
ଓଡ଼ିଶା ଟେକ ରଖିଲେ ।୬।

## ଶୁଣରେ ଇଉ ଚିଠି

ପୂର୍ବରୁ କିଛି ସେ ଛାନ୍ଦ ଚଉତିଶା
ଓଡ଼ିଆରେ ଲେଖିଥିଲେ
ମହାକାବ୍ୟ ଲେଖି "ଶାରଳା ଦାସ" ଯେ
ଆଦି କବି ବୋଲାଇଲେ ।୭।

ସଂସ୍କୃତଭାଷାରେ ଲେଖାଥିଲା ସବୁ
ଶାସ୍ତ୍ର ପୁରାଣ ପ୍ରଭୃତି
ସାଧାରଣ ଲୋକ ପଢ଼ି ବୁଝିବାରେ
ଅସୁବିଧା ଥିଲା ଅତି ।୮।

କଥିତ ଭାଷାରେ ମହାଭାରତ ଓ
ପୁରାଣମାନ ସେ ରଚି
ସାରା ଓଡ଼ିଶାରେ ଜନପ୍ରିୟ କବି
ଭାବେ ହେଲେ ପରିଚିତି ।୯।

ନିଜ ଜନ୍ମଭୂମି ଓଡ଼ିଶାକୁ ଅତି
ଭଲ ପାଉଥିଲେ ଯେଣୁ
ଓଡ଼ିଆର ରିତି ନୀତିର ବର୍ଣ୍ଣନା
ମିଳେ ରଚନାରେ ତେଣୁ ।୧୦।

ପ୍ରତିବର୍ଷ ମାଘ ଶୁକ୍ଳ ସପ୍ତମୀରେ
ଝଙ୍କଡ଼ରେ ତାଙ୍କ ଶ୍ରାଦ୍ଧ
ପାଳନ କରନ୍ତି ମହା ସମାରୋହେ
ଜନଗଣେ ଆଜି ମଧ୍ୟ ।୧୧।

ଧନ୍ୟ ହେ ଶାରଳା ଦାସ ଆଦିକବି
ଧନ୍ୟ ତୁମର ରଚନା
ଅମର ରହିବ ଯୁଗେ ଯୁଗେ ତୁମେ
ଧନ୍ୟ ତୁମର ସାଧନା ।୧୨।



# ଶ୍ରୀ ଗୀତ ଗୋବିନ୍ଦର କବି
# ଶ୍ରୀ ଜୟଦେବ

ଖୋର୍ଦ୍ଧା ଜିଲ୍ଲା ବାଲିଅନ୍ତା-
ବ୍ଲକ, "କେନ୍ଦୁଲି"ରେ
ଜନ୍ମିଥିଲ ପିତା "ଭୋଜ
ରାଜ" ଔରଷରେ ।୧।
ପୂଣ୍ୟବତୀ ମାତା "ରାଧା
ଦେବୀ" ଭାଗ୍ୟବତୀ
"ଜୟଦେବ" ନାମ ତୁମ
ପତ୍ନୀ "ପଦ୍ମାବତୀ" ।୨।
"ଶ୍ରୀ ଗୀତ ଗୋବିନ୍ଦ" ତୁମ
ନିତ୍ୟ ଶ୍ରୀ ମନ୍ଦିରେ
ପାଠ କରାଯାଏ ବଡ଼-
ସିଂହାରର ପରେ ।୩।
ନୃତ୍ୟ କରେ ଦେବଦାସୀ
ଗାଇ ତୁମ ଗୀତ
ନୃତ୍ୟ ଗୀତେ ଜଗନ୍ନାଥ
ହୋଇଥାନ୍ତି ପ୍ରୀତ ।୪।
ପ୍ରଭୁ ଜଗନ୍ନାଥଙ୍କର
ଅଟେ ଯେଣୁ ପ୍ରିୟ
ସମଗ୍ର ବିଶ୍ୱରେ ତେଣୁ
ମିଳିଅଛି ଶ୍ରେୟ ।୫।
ସଂସ୍କୃତ ଭାଷାରେ ରଚି
ଶ୍ରେଷ୍ଠ କାବ୍ୟକୃତି
ବିଶ୍ୱବନ୍ଦ୍ୟ ହୋଇ ଅଛ
ଆହେ ମହାମତୀ ।୬।
ନୃତ୍ୟ ସୁନିପୁଣା କବି
ପତ୍ନୀ "ପଦ୍ମାବତୀ"

## ଗୁରୁରେଇର ଚିଠି

କବିଙ୍କ ସୃଷ୍ଟିକୁ ନୃତ୍ୟ
ରୂପ ଦେଇଥାନ୍ତି ।୭।
ସୁଲଳିତ ଭାବଭାଷା
ସୁମଧୁର ସ୍ୱର
ମୋହିନିଏ ମନ ସର୍ବ
ସୁର ନରଙ୍କର ।୮।
ଶ୍ରୀଗୀତ ଗୋବିନ୍ଦ ରାଧା
କୃଷ୍ଣ ପ୍ରେମରସ
ଭକ୍ତର ଭକ୍ତିରେ ମୋଦ
ଲଭିଣ ଅଶେଷ ।୯।
ଭକ୍ତ ରୂପେ ହୋଇ ଉଭା
ପ୍ରଭୁ ଜଗନ୍ନାଥ
ପୂର୍ଣ୍ଣକଲେ ଜୟଦେବ
ତୁମ ମନୋରଥ ।୧୦।
କାଶୀ ନିବାସୀ ପଣ୍ଡିତ
"କବି ଚନ୍ଦ୍ରଦତ୍ତ"
"ଭକ୍ତିମାଳା" ତାହାଙ୍କର
ଶ୍ରେଷ୍ଠ କୃତି ଗ୍ରନ୍ଥ ।୧୧।
ସରସ୍ୱତୀ ବରପୁତ୍ର
କବି ଜୟଦେବ
"ଶ୍ରୀ ଗୀତ ଗୋବିନ୍ଦ" କାଳ
ଜୟୀ କାବ୍ୟ ତବ ।୧୨।
ଯୁଗ ଯୁଗକୁ ଅମର
ରହିଥିବ ତୁମେ
"ଶ୍ରୀ ଗୀତ ଗୋବିନ୍ଦ" ଥିବା
ଯାଏ ଧରା ଆମେ ।୧୩।
ଧନ୍ୟ କେନ୍ଦୁବିଲ୍ୟ ଗ୍ରାମ
ଧନ୍ୟ ତାତ ମାତ
ଜୟ କବି ଜୟଦେବ
ଜୟ ଜଗନ୍ନାଥ ।୧୪।

ଗୁରେଇର ଚିଠି

# ନୟାଗଡ଼ ମଣି

## କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା



ନୟାଗଡ଼େ ସୁପ୍ରସିଦ୍ଧ ଶୈବପୀଠ
ଶରଣକୁଳ ଗ୍ରାମଟି
ଜନ୍ମ ଲଭିଥିଲ, "ସଦାଶିବ" ତୁମେ
ଲଡୁବାବା ପୂଜନରେ ।୧।

ପିତା "ପୂରୀ ହୋତା" "ଭବାନୀ" ଯେ ମାତା
ଭିକାରୀ ପଡ଼ା ଶାସନେ
ଶିବଙ୍କ କୃପାରୁ ଜନ୍ମ ଲଭିବାରୁ
ଖ୍ୟାତ "ସଦାଶିବ" ନାମେ ।୨।

ଚାଳିଶି ବରଷେ ଯୁବକ ବୟସେ
ବୈଷ୍ଣବ ଦୀକ୍ଷା ନେଲ
ଲେଖନୀ ମୁନରେ ରାଧା କୃଷ୍ଣଙ୍କର
ଚରିତ ଚିତ୍ରଣ କଲ ।୩।

ବାବାଜୀ କିଶୋର ଦାସ ଗୋସ୍ୱାମୀଙ୍କ
ଠାରୁଥିଲ ଦୀକ୍ଷା ନେଇ
ପତ୍ନୀଙ୍କ ଅକାଳ ବିୟୋଗେ ସଂସାର
ଜଞ୍ଜାଳେ ବିମୁଖ ହୋଇ ।୪।

ପୁରୀ ଗଜପତି ଶ୍ରୀ ବୀର କିଶୋର
"କବିସୂର୍ଯ୍ୟ" ବ୍ରହ୍ମା ପଦ
ଦେବାରୁ ବିଖ୍ୟାତ ହେଲ ଉତ୍କଳରେ
ଜୀବନରେ ଲଭିମୋଦ ।୫।

କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା ତୁମେ
ନୟାଗଡ଼ ଗଉରବ
ବ୍ରାହ୍ମଣ କୁଳରେ ଜନ୍ମ ଲାଭ କରି
ହେଲ ପରମ ବୈଷ୍ଣବ ।୬।

# ଗୁରେଇର ଚିଠି

ବଇଷ୍ଣବ ଧର୍ମ ପ୍ରଚାର ପ୍ରସାର
ପାଇଁ ଗୃହତ୍ୟାଗୀ ହୋଇ
ସମୃଦ୍ଧ କରିଛ ବାଣୀ ଭଣ୍ଡାରକୁ
କୃଷ୍ଣରସାମୃତ ଦେଇ ।୭।

"ନିଷ୍ଠା ନୀଳମଣି" "ପ୍ରେମ ତରଙ୍ଗିଣୀ"
"ଶ୍ରୀ ମୋହନ କଳ୍ପଲତା"
"ପ୍ରେମ କଳ୍ପଲତା" "ଲଳିତ ଲୋଚନା"
"ହରି ଭକ୍ତି କଳ୍ପଲତା" ।୮।

"ପ୍ରୀତି ଚିନ୍ତାମଣୀ" "ପ୍ରେମ ଚିନ୍ତାମଣୀ"
"ନାମ ଚିନ୍ତାମଣି" ରଚି
"ତତ୍ୱ ଚିନ୍ତାମଣି" "ଗୌର ଚିନ୍ତାମଣି"
"ପାଠ ରତ୍ନାବଳୀ" ସଂଚି ।୯।

ବୈଷ୍ଣବ ସାହିତ୍ୟ ରଚନାରେ ଶ୍ରେଷ୍ଠ
କୃତିତ୍ୱ ଅର୍ଜନ କରି
ରଖିଛ ସୁଯଶ ଶରଣକୁଳର
"ମହାକବି" ପଦବରି ।୧୦।

ଧନ୍ୟ ଧନ୍ୟ ତୁମେ କବି ସୂର୍ଯ୍ୟ ବ୍ରହ୍ମା
ଧନ୍ୟ ତୁମ କାବ୍ୟ କୃତି
ଉତ୍କଳ ଆକାଶେ ସୂର୍ଯ୍ୟ ସମ ସଦା
ଉଦ୍‌ଭାଷିତ ତୁମ କୀର୍ତ୍ତି ।୧୧।

କବିସୂର୍ଯ୍ୟ ବ୍ରହ୍ମା ପଠାଣୀ ସାମନ୍ତ
ହାସ୍ୟକବି ଯଦୁମଣି
ଭକ୍ତ ଚରଣ ଓ ବିନାୟକ ମିଶ୍ର
ନୟାଗଡ଼ର ଏ ମଣି ।୧୨।



:: ଶୁଭେଚ୍ଛାର ଚିଠି ::

# ଯୋଗ ଜନ୍ମା ପଠାଣୀ ସାମନ୍ତ

ଖଣ୍ଡପଡ଼ା ରାଜ ବଂଶେ ଲଭିଥିଲ ଜନ୍ମ
ପିତା "ଶ୍ୟାମ ବନ୍ଧୁ" ମାତା "ବିଷ୍ଣୁ ମାଳୀ" ନାମ ॥୧॥
ଅଠରଶ ପଞ୍ଚତ୍ରିଶ ପଉଷ ମାସରେ
ଜନ୍ମିଥିଲ କୃଷ୍ଣ ପକ୍ଷ ଅଷ୍ଟମୀ ତିଥିରେ ॥୨॥
ମୃତ୍ୟୁ ଲଭିବାରୁ ପୂର୍ବୁ ଭାଇ ଓ ଭଉଣୀ
ଅପତର୍ଯ୍ୟାଣୀ ନାମ ପିତା ରଖିଲେ "ପଠାଣୀ" ॥୩॥
ଜ୍ୟୋତିଷ ଶାସ୍ତ୍ରରେ ଥିଲା ଅଗାଧ ପାଣ୍ଡିତ୍ୟ
ବାଉଁଶ ନଳୀରେ ଗଣି ଗ୍ରହ ଓ ନକ୍ଷତ୍ର ॥୪॥
ପୃଥିବୀ ରହିଛି ସ୍ଥିର ଘୁରୁ ଅଛି ସୂର୍ଯ୍ୟ
ପ୍ରମାଣ ଯେ କରିଥିଲ ନହରାଇ ଧୈର୍ଯ୍ୟ ॥୫॥
ବ୍ରିଟିଶ୍ ଶାସକଙ୍କୁ କରି ଚମତ୍କୃତ
ମହାମହୋଧ୍ୟାୟ ଉପାଧି ହୋଇଲ ଭୂଷିତ ॥୬॥
ସଂସ୍କୃତ ଭାଷାରେ ରଚି ସିଦ୍ଧାନ୍ତ ଦର୍ପଣ
କାଳ କାଳକୁ ରଖିଛ ଯଶ କୀର୍ତ୍ତିମାନ ॥୭॥
ଗ୍ରହ ନକ୍ଷତ୍ରର ସ୍ଥିତି ଚଳନାଦି ଦୋଷ
ନିର୍ଭୁଲ ଗଣନା ତୁମ ନାହିଁ ତ୍ରୁଟି ଲେଶ ॥୮॥
ସାମନ୍ତ ପଞ୍ଜିକା ତୁମ ସିଦ୍ଧାନ୍ତ ବଳରେ
ଶ୍ରେଷ୍ଠ ବିବେଚିତ ଅଦ୍ୟାବଧି ଉତ୍କଳରେ ॥୯॥
ଯୋଗଜନ୍ମା ପୁରୁଷ ହେ ପଠାଣୀସାମନ୍ତ
ଯୁଗ ଯୁଗକୁ ରଖିଲ ଉତ୍କଳର ଟେକ ॥୧୦॥
କାଳଜୟୀ କୃତି ତୁମ ସିଦ୍ଧାନ୍ତ ଦର୍ପଣ
ବିଶ୍ୱବାସୀ ହିତେ ଯାହା କରିଛ ଅର୍ପଣ ॥୧୧॥
ଚନ୍ଦ୍ର ସୂର୍ଯ୍ୟ ଥିବା ଯାଏ ନ ହେବ ବିଲୟ
ଚିରଦିନ ଦୀପ୍ତିମାନ ରହିବ ନିଶ୍ଚୟ ॥୧୨॥
ଧନ୍ୟ ଖଣ୍ଡପଡ଼ା ମାଟି ଧନ୍ୟ ନୟାଗଡ଼
ଜ୍ୟୋତିଷ ଶାସ୍ତ୍ରରେ ସୃଷ୍ଟି କଲ ଏକ ଗଡ଼ ॥୧୩॥

ଧନ୍ୟ ଉତ୍କଳ ଜନନୀ ଧନ୍ୟ ପିତା ମାତା
ଧନ୍ୟ ପଠାଣୀ ସାମନ୍ତ ଜ୍ୟୋତିଃଶାସ୍ତ୍ରବେତ୍ତା ॥୧୪॥
ଧନ୍ୟ ତୁମର ସାଧନା ଧନ୍ୟ ତୁମ ସିଦ୍ଧି
ଧନ୍ୟ ହେ ମହାପୁରୁଷ ଧନ୍ୟ ବିଦ୍ୟାବୁଦ୍ଧି ॥୧୫॥
ଉଣିଶିଶ ଚାରି, ଜୁନ ମାସ ଏକାଦଶ
ମରିବି ଅମର ହୋଇରଖିଗଲ ଯଶ ॥୧୬॥





# ଭକ୍ତ କବି ଭକ୍ତ ଚରଣ

ଖୋର୍ଦ୍ଧା ଜିଲ୍ଲା ସାନପଦର
ଗ୍ରାମେ ଲଭି ଜନମ
ସାର୍ଥକ କରିଛ "ବୈରାଗୀ"
ହୋଇ ବୈରାଗୀ ନାମ ।୧।
ଭକ୍ତ କବି ଭକ୍ତ ଚରଣ
ଭକ୍ତି ଭାବ ରେ ମଜ୍ଜି
ବିତାଇଲ ସାରା ଜୀବନ
ଗୃହ ସଂସାର ତେଜି ।୨।
ବିଦ୍ୟା ଶିକ୍ଷା ଚାଟଶାଳୀରୁ
କରି ବୈଷ୍ଣବ ଧର୍ମ
ଦୀକ୍ଷା ନେଇ ଶିକ୍ଷା କରିଲ
ଧର୍ମ ତତ୍ତ୍ୱ ଅସୀମ ।୩।
ପରିକ୍ରମା ସାରା ଭାରତ
କଲ ପଦ ବ୍ରଜରେ
ସିଦ୍ଧି ଲଭି ସିଦ୍ଧ ସାଧକ
ବଇଷ୍ଣବ ଭାବରେ ।୪।
ଦଶପଲ୍ଲା ଗୌଡ଼ପାଟଣା
ଠାରେ ମଠ ସ୍ଥାପନ
କରି "ବୃନ୍ଦାବନ ଚନ୍ଦ୍ର"ଙ୍କୁ
କଲ ପୂଜାଅର୍ଚ୍ଚନ ।୫।
ଚକ୍ଷୁଶୂଳ ହୋଇ ରାଜାଙ୍କ
ତେଜି ସେ ସ୍ଥାନ ଆସି
ସୁନାଖଳା ମଠ ସ୍ଥାପନ
କଲ ଇଷ୍ଟ ମନାସି ।୬।
ସ୍ୱପ୍ନାଦେଶ ପାଇ ନଦୀରୁ
ଆଣି ଇଷ୍ଟଦେବଙ୍କୁ
ମଠରେ ସ୍ଥାପନା କରିଲ
ବୃନ୍ଦାବନ ଚନ୍ଦ୍ରଙ୍କୁ ।୭।
ବୃନ୍ଦାବନ ଚନ୍ଦ୍ର ଅଦ୍ୟାପି
ବିଜେ ସୁନାଖଳାରେ



ପୂଜା ଆରାଧନା ହୁଅନ୍ତି
ରହି ଉକ୍ତ ମଠରେ ।୮।
କୃଷ୍ଣ ଭକ୍ତି ଭାବେ ଉଦ୍‌ବୁଧ
ହୋଇ ଭକ୍ତି ରସରେ
ବଇଷ୍ଣବ ଧର୍ମ ଦର୍ଶନ
ରଚି "ମନ ଶିକ୍ଷା"ରେ ।୯।
"କଳା କଳେବର ଚୌତିଶା"
"ମନବୋଧ ଚୌତିଶା"
ଭଗ୍‌ବତ କୃପା ପ୍ରାପ୍ତିର
ରଚି ଦେଇଛ ଦିଶା ।୧୦।
"ମଥୁରା ମଙ୍ଗଳ" "ମଥୁରା
ବିଜେ" ଆଦି ସର୍ଜନା
ବଇଷ୍ଣବ ଭକ୍ତି ତତ୍ତ୍ୱର
ଅଟେ ଶ୍ରେଷ୍ଠ ବର୍ଣ୍ଣନା ।୧୧।
ସରସ, ସୁନ୍ଦର, ସରଳ
ପଦ ସଂଯୋଜନାରେ
କବିତ୍ୱର ପରି ପ୍ରକାଶ
ହୋଇଛି ରଚନାରେ ।୧୨।
ଓଡ଼ିଶାର ପୁର ପଲ୍ଲୀରେ
ଭକ୍ତ ଚରଣ ନାମ
ଚିର ଦିନ ଜନ ମାନସେ
ଥିବ ଜାଜ୍ୱଲ୍ୟ ମାନ ।୧୩।
ଧନ୍ୟ ଧନ୍ୟ ଭକ୍ତ ଚରଣ
ଧନ୍ୟ ହେ କବିବର
କରିଛ ସମୃଦ୍ଧ ଓଡ଼ିଶା
ସାହିତ୍ୟର ଭଣ୍ଡାର ।୧୪।
ପ୍ରାତଃ ସ୍ମରଣୀୟ, ବରେଣ୍ୟ
କବି ଭକ୍ତ ଚରଣ
ଚିର ପୂଜନୀୟ, ନମସ୍ୟ
ବନ୍ଦୁ ତବ ଚରଣ ।୧୫।

## କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ

ଭଞ୍ଜକୁଳ କଞ୍ଜ ଉପେଇନ୍ଦ୍ର ଭଂଜ
ହେ କବି କୁଳ ସମ୍ରାଟ
ଧନ୍ୟ ବୀରବର ପଣ୍ଡିତ ପ୍ରବର
ଉତ୍କଳ ସାହିତ୍ୟ ରାଟ ।୧।
ରୀତି ସାହିତ୍ୟର କାବ୍ୟ କବିତାର
ଶ୍ରେଷ୍ଠ କବି ଉପଇନ୍ଦ୍ର
କରିଛ ସମୃଦ୍ଧ ବାଣୀ ଭଣ୍ଡାରକୁ
ଉତ୍କଳ ଆକାଶ ଚନ୍ଦ୍ର ।୨।
ଗଞ୍ଜାମ ମାଟିରେ କୁଲାଡ଼ ଗଡ଼ରେ
ଜନ୍ମ ଲଭି ରାଜ ବଂଶେ
ରାଜ ପଦ ତ୍ୟାଗୀ ହେଲ ଅନୁରାଗୀ
ବାଣୀ ଆରଧନା ଆସେ ।୩।
କଳ୍ପନା ବିଳାସୀ ପ୍ରତିଭା ପ୍ରକାଶି
ଉପମା ଓ ଅଳଙ୍କାରେ
ଅନୁପ୍ରାସ ବଂଧେ ନାନା ବିଧ ଛନ୍ଦେ
ରଚି କାବ୍ୟ କବିତାରେ ।୪।
ନୟାଗଡ଼େ ବାସ କରି "ବୈଦେହୀଶ-
ବିଳାସ" ସୁରସ କାବ୍ୟ
ବିରଚିଲ ରାମ ତାରକ ପ୍ରସାଦେ
ବିଚିତ୍ର କର୍ମାନୁଭବ ।୫।
"ପ୍ରେମ ସୁଧାନିଧି", "କଳା କଉତୁକ",
"କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ"
"ରାମ ରସାମୃତ", "ଲାବଣ୍ୟବତୀ" ଯେ,
"ଭାବବତୀ" ଆଦି କରି ।୬।
"ଚଉପଦୀ ଚନ୍ଦ୍ର" "ଚୌପଦୀ ଭୂଷଣ"

## ଶ୍ରଦ୍ଧାଞ୍ଜଳି

"ଅବକାରସ ତରଙ୍ଗ"
"ଚିତ୍ରକାବ୍ୟବନ୍ଧୋଦୟ", "ଦଶପୋଇ",
"ଲାବଣ୍ୟନିଧି" ସୁସଂଗ ।୭।
ଶତ ଶତ କାବ୍ୟ କବିତା ରଚିଛ
ଅନନ୍ୟ ଉତ୍କଳ କବି
ଓଡ଼ିଆ ସାହିତ୍ୟ 'କାଳିଦାସ' ତୁମେ
ଓଡ଼ିଶା ଗୌରବ ରବି ।୮।
ପଢ଼ି ତୁମ କାବ୍ୟ ହେ ମହାନୁଭବ
ନତ ହୁଏ ମଥା ପାଦେ
ଶବ୍ଦ ସଂଯୋଜନା, ଜମକ, ଉପମା-
ବିରଳ ଅଟେ ଏ ଭବେ ।୯।
ଲଳିତ ମଧୁର ରାଗିଣି ସୁସ୍ୱର
କବିତା ବୈଶିଷ୍ଟ୍ୟ ତୁମ
ଭାବ ଭାଷା ଭରା ଜନ ମନ ହରା
ସୃଷ୍ଟି ତୁମ ଅନୁପମ ।୧୦।
ଜୟନ୍ତୀ ବାସରେ ଚିତ୍ତରଭସରେ
କୋଟି ପ୍ରଣତୀ ଚରଣେ
ଜନ୍ମ ଲଭ ପୁଣି ଉତ୍କଳ ଜନନୀ
ଭାଷା ସଂକଟ ହରଣେ ।୧୧।



## ଗୁରୁଙ୍କର ଚିଠି

## ସଂକ୍ରାନ୍ତି ପୁରୁଷ, ବ୍ୟାସ କବି

# ଫକୀରମୋହନ ସେନାପତି



ସଂକ୍ରାନ୍ତି ପୁରୁଷ, ବ୍ୟାସ କବି ତୁମେ
ନାମ ଫକୀର ମୋହନ
ଓଡ଼ିଆ ଭାଷାର ବିଲୋପ ବିରୁଦ୍ଧେ
କଲ ତୀବ୍ର ଆନ୍ଦୋଳନ ॥୧॥
ଭାଷା ସାହିତ୍ୟର ସୁରକ୍ଷା ନିମିତ୍ତ
ସାଜିଥିଲ ସେନାପତି
କୃତଜ୍ଞ ରହିବ ଚିରଦିନ ତୁମ
ନିକଟେ ଓଡ଼ିଆ ଜାତି ॥୨॥
ବାଲେଶ୍ୱର ଜିଲ୍ଲା ମଲ୍ଲିକାଶପୁର
ଗ୍ରାମରେ ଜନମି ଥିଲ
ମକର ସଂକ୍ରାନ୍ତି ଥିଲା ଜନ୍ମତିଥି
ରଜରେ ବାହୁଡ଼ିଗଲ ॥୩॥
"ଲକ୍ଷ୍ମଣ ଚରଣ ସେନାପତି" ପିତା
ମାତା ଯେ "ତୁଳସୀ ଦେବୀ"
ବାଲ୍ୟକାଳେ କରି ଅନାଥ ତୁମକୁ
ହେଲେ ସ୍ୱର୍ଗେ ଦେବା ଦେବୀ ॥୪॥
ପିଉସୀ "କୁଟିଳାଦେଈ" ଦାୟିତ୍ୱରେ
ହୋଇ ଲାଳିତ ପାଳିତ
ଚିର ସହଚର ଅସୁସ୍ଥ ଶରୀର
ଥିଲା ଭାଗ୍ୟ ବିଡ଼ମ୍ବିତ ॥୫॥
ମଧୁସୂଦନ ଓ ରାଧାନାଥ ରାୟ
ସହ ହୋଇଣ ମିଳିତ
କୁଟଚକ୍ରାନ୍ତରୁ ଓଡ଼ିଆ ଭାଷାକୁ
ରଖିଲ କରି ଜୀବିତ ॥୬॥
ଓଡ଼ିଆ ଭାଷା ଓ ସାହିତ୍ୟ ସଂସ୍କୃତି
ପ୍ରତି ତୁମ ଅବଦାନ
ଭୁଲିବେନି କେବେ ଏ ଉତ୍କଳବାସୀ
ଭାବୁଥିବେ ଚିରଦିନ ॥୭॥

ବହୁ କଷ୍ଟ କରି ବାଲେଶ୍ୱର ଠାରେ
ବସାଇଲ ଛାପାଖାନା
'ବୋଧ ଦାୟିନୀ' ଓ 'ସମ୍ବାଦ ବାହିକା'
ପତ୍ର କଲ ସମ୍ପାଦନା ॥୮॥

'ଉତ୍କଳ ଭ୍ରମଣ' 'ଉପହାର' ଆଉ
'ପୁଷ୍ପମାଳା' 'ପୂଜାଫୁଲ'
ପ୍ରାର୍ଥନା ଓ 'ଧୂଳି' କବିତା ପୁସ୍ତକ
ରଚି ଉପହାର ଦେଲ ॥୯॥

କାବ୍ୟ ମାନସର ପରିଚୟ ଦେଇ
ସାରସ୍ୱତ ଜଗତକୁ
କାଳଜୟୀ ଉପନ୍ୟାସ ସୃଷ୍ଟି କଲ
'ଛମାଣ ଆଠ ଗୁଣ୍ଠକୁ' ॥୧୦॥

'ମାମୁଁ', 'ଲଛମା' ଓ 'ପ୍ରାୟଶ୍ଚିତ'
ଆଦି ସୃଷ୍ଟି ତମ ଅନୁପମ
'ଡାକମୁନ୍‌ସୀ' ଓ 'ପେଟେଣ୍ଟ୍ ମେଡିସିନ୍'
"ରେବତୀ" ବି ଅନ୍ୟତମ ॥୧୧॥

ବ୍ୟଙ୍ଗ, ହାସ୍ୟରସ ଗଳ୍ପ ମାଧ୍ୟମରେ
ସମାଜର କୁସଂସ୍କାର
ଦୂର କରିବାକୁ ସତତ ଚେଷ୍ଟିତ
ଥିଲ ତୁମେ, ମାନସର ॥୧୨।

ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ତୁମ
ଦାନ ମହାର୍ଘ ସଂପଦ
କାବ୍ୟ କବିତା ଓ ଗଳ୍ପ ଉପନ୍ୟାସ
ସୃଷ୍ଟି କରେ ମନେ ମୋଦ ॥୧୩॥

ପ୍ରାତଃ ସ୍ମରଣୀୟ ଚିର ବନ୍ଦନୀୟ
କବି ଫକୀର ମୋହନ
ସ୍ୱତନ୍ତ୍ର ଓଡ଼ିଶା ଗଠନରେ ତୁମ
ଥିଲା ବହୁ ଅବଦାନ ॥୧୪॥

ଅମର ରହିବ ଚିରଦିନ ତୁମେ
ଉତ୍କଳ ଜନ ମାନସେ
ଯେତେ ଦିନ ଥିବ ଅମୂଲ୍ୟ ବିଭବ
ତୁମ ସାହିତ୍ୟ ଆକାଶେ ॥୧୫॥

## ସ୍ୱଭାବ କବି

## ଗଙ୍ଗାଧର ମେହେର



ସମ୍ବଲପୁରର ବରପାଲି ଗ୍ରାମେ
ଜନ୍ମିଥିଲ ଗଙ୍ଗାଧର
ମାତାଥିଲେ ତୁମ ସେବତୀ ଦେବୀ ଯେ
ପିତା ଚୈତନ୍ୟ ମେହେର ॥୧॥

ଜନ୍ମତିଥି ଥିଲା ଶ୍ରାବଣ ପୂର୍ଣ୍ଣିମା
ଅଠରଶ ବା'ସଠୀ
ପିତାଥିଲେ ତୁମ ବୁଣାକାର ଯେଣୁ
କଲ କୌଳିକ ବୃତ୍ତି ॥୨॥

ଅଭାବୀ ସଂସାରେ ପଞ୍ଚମ ଶ୍ରେଣୀରେ
ପାଠପଢ଼ା ହେଲା ଇତି
ନିଜସ୍ୱ ଚେଷ୍ଟାରେ ଅଧ୍ୟୟନ କଲ
ପ୍ରାଚୀନ ସାହିତ୍ୟ କୃତି ॥୩॥

'ରଘୁବଂଶ' 'ଅଭିଜ୍ଞାନଶାକୁନ୍ତଳମ୍'
'ବଇଦେହୀଶ ବିଳାସ'
'ଲାବଣ୍ୟବତୀ' ଓ 'ଭାଗବତ' ଆଉ
'ରାମ ଚରିତ ମାନସ' ॥୪॥

'ରସ କଲ୍ଲୋଳ' ଓ 'ରାମାୟଣ' ଆଉ
'ମହାଭାରତ' ସହିତେ
ଅଧ୍ୟୟନ କଲ ସଂସ୍କୃତ ସାହିତ୍ୟ
ସହ ପ୍ରାଚୀନ ସାହିତ୍ୟେ ॥୫॥

ପ୍ରଚଣ୍ଡ ପ୍ରତିଭା ବୁଦ୍ଧିମତା ଆଉ
ଅଧ୍ୟବସାୟର ବଳେ
କାଳଜୟୀ କାବ୍ୟ କବିତା ରଚିଲ
ବିଭୁ କୃପା ଲଭି ହେଲେ ॥୬॥

ବିଶ୍ୱ ବିଦ୍ୟାଳୟ ଶିକ୍ଷା ନୁହେଁ ଖାଲି
ଯୋଗ୍ୟତାର ମାପକାଠି

ଶ୍ରଦ୍ଧାଞ୍ଜଳି

ଈଶ୍ୱରଙ୍କ କୃପାବଳେ କରେ କବି
କାବ୍ୟ ଓ କବିତା ସୃଷ୍ଟି ॥୭॥
କବିର କବିତ୍ୱ ଅଟଇ କେବଳ
ଈଶ୍ୱରଙ୍କ ବରଦାନ
ପ୍ରମାଣିତ କଲ ରଚି ଉଚ୍ଚକୋଟି
କାବ୍ୟ ଓ କବିତା ମାନ ॥୮॥
ଉଚ୍ଚ ଶିକ୍ଷାଗତ ଯୋଗ୍ୟତା ନଥାଇ
ତୁମର କାବ୍ୟ କବିତା
ଉଚ୍ଚଶିକ୍ଷାଳୟେ ଅଧ୍ୟାପନା ହୁଏ
ଲଭି ସାହିତ୍ୟ ମାନ୍ୟତା ॥୯॥
'ତପସ୍ୱିନୀ' ଆଉ 'ପ୍ରଣୟ ବଲ୍ଲରୀ'
'କୀଚକ ବଧ' ଆବର
'ଇନ୍ଦୁମତୀ' ଆଉ 'ଉତ୍କଳ ଲକ୍ଷ୍ମୀ' ଯେ
'ଅଯୋଧ୍ୟା ଦୃଶ୍ୟ' ନିକର ॥୧୦॥
'କବିତା କଲ୍ଲୋଳ' 'ଅର୍ଘ୍ୟ ଥାଳି' ଆଉ
'ଅହଲ୍ୟା ସ୍ତବ' 'ପଦ୍ମିନୀ'
'ଭାରତ ଭାବନା' 'କବିତା ମାଳା' ଯେ
'କୃଷକ ସଂଗୀତ' ପୁଣି ॥୧୧॥
ପ୍ରକୃତିର ଚିତ୍ର କାବ୍ୟ କବିତାରେ
ସୁଚାରୁ ରୂପେ ଚିତ୍ରିତ
ପ୍ରକୃତିର କବି ରୂପେ ତେଣୁ ତୁମେ
ଜନ ମାନସେ ବିଦିତ ॥୧୨॥
ସମ୍ବଲପୁରରେ ଜନ୍ମିଥିଲେ ମଧ୍ୟ
ଲେଖାରେ ସମ୍ବଲପୁରୀ
ଭାଷା କେଉଁଠାରେ ବ୍ୟବହାର ନାହିଁ
ବୈଶିଷ୍ଟ୍ୟ ଏହା ତୁମରି ॥୧୩॥
ଧନ୍ୟ ଗଙ୍ଗାଧର ମେହେର କବି ହେ
ଧନ୍ୟ ତୁମ କାବ୍ୟ କୃତି
ଓଡ଼ିଆ ସାହିତ୍ୟ ଆକାଶରେ ସଦା
ଉଦ୍‌ଭାଷିତ ତୁମ ଦ୍ୟୁତି ॥୧୪॥

## ଛନ୍ଦ କବି

# ରାଧା ମୋହନ ଗଡ଼ନାୟକ

ସବୁଜ ଯୁଗର ଗାଥା କବିତାର
କାଳଜୟୀ ଛନ୍ଦକବି
ଓଡ଼ିଆ ସାହିତ୍ୟ ଗଡ଼ର ନାୟକ
ଉତ୍କଳ ଗଗନ ରବି ।୧।

ଦେଶ ସେବା ସହ ବାଣୀ ସେବା ତୁମ
ଜୀବନର ଥିଲା ବ୍ରତ
ସମୃଦ୍ଧ କରିଛ ବାଣୀ ଭଣ୍ଡାରକୁ
କବିତାରେ ଶତ ଶତ ।୨।

"କୈଶୋରିକା" ଆଉ "ଉତ୍କଳିକା" ସହ
"ମେଘଦୂତ" "କାଳିଦାସ"
"କାବ୍ୟନାୟିକା" ଓ "ପଶୁପକ୍ଷୀ କାବ୍ୟ"
ସୃଷ୍ଟି ତୁମ ଦିବ୍ୟ ରସ ।୩।

ଯେତେଦିନ ଥିବ ସୂର୍ଯ୍ୟ ଚନ୍ଦ୍ର ତାରା
ଥିବ ତୁମେ ସେତେ ଦିନ
ତୁମକାବ୍ୟ କୃତି ଉତ୍କଳ ସାହିତ୍ୟ
ଗନ୍ତାଘରେ ଶ୍ରେଷ୍ଠ ଦାନ ।୪।

ତୁମ ପୁଣ୍ୟ ପୀଠ "ବାଣିବିତାନ" ଓ
ପବିତ୍ର ଏ ଅନୁଗୁଳ
ରହିଥିବ ହୋଇ ଉତ୍କଳବାସୀଙ୍କ
ସାହିତ୍ୟର ଗୁରୁକୁଳ ।୫।

ଉତ୍କଳ ସାହିତ୍ୟ ଏକାଡ଼େମୀରେ ହେ
ଥିଲ ତୁମେ ସଭାପତି
ଘେନ ହେ ପ୍ରଣତି ଅମରପୁରରୁ
ଜ୍ଞାନୀଗୁଣୀ ମହାମତି ।୬।

## ଗୁରେଇର ଚିଠି

ବଜାଇଛ ଯେଉଁ ମୋହନ ମୂରଲୀ
ମହାମନା ହେ ମୋହନ
ଝୁରୁଥିବେ ସଦା ସାହିତ୍ୟ ରସିକ
ଗୋପାଳ ଗୋପିକା ଗଣ ।୭।

ଦିଅ ହେ ଆଶିଷ ଅମର ପୁରରୁ
ଉତ୍କଳ ବାସୀଙ୍କୁ ଢାଳି
ତୁମ ଆଦର୍ଶରେ ଉତ୍କଳର ବାଣୀ
ଭଣ୍ଡାର ଉଠୁ ଉଛୁଳି ।୮।

ହୁଏ ନାହିଁ ପ୍ରତେ ମରିଗଲ ସତେ
ରହିଛ ଅମର ହୋଇ
ରହିଥିବ ଚିର ଅମ୍ଳାନ ଭାସ୍ୱର
"ତୁମେ ତ ମରଣ ଜୟୀ" ।୯।





# କାନ୍ତ କବି
# ଲକ୍ଷ୍ମୀକାନ୍ତ ମହାପାତ୍ର



ଭଦ୍ରକ ଜିଲ୍ଲାର ତାଳପଦା ଗ୍ରାମେ
ସାମନ୍ତରାୟ ବଂଶରେ
ଜନ୍ମ ଉଣେଇଶ ଅଠାଇଶ ଡିସେ -
ମ୍ବର ନଅ ତାରିଖରେ ।୧।

ଜୀବନ ଯାତ୍ରାରେ ଦୁଃଖ ଯନ୍ତ୍ରଣାରେ
ଜର୍ଜରିତ ଲକ୍ଷ୍ମୀକାନ୍ତ
ଓଡ଼ିଆ ସାହିତ୍ୟେ ଲେଖନୀ ଚାଳନା
କରିହେଲ ଦିପ୍ତୀବନ୍ତ ।୨।

'ବନ୍ଦେ ଉତ୍କଳ ଜନନୀ' ଓ 'ସବୁ-
ଥିରୁ ବଞ୍ଚିତ କରି'
'କଣା ମାମୁଁ' 'ବୁଢ଼ା ଶଙ୍ଖାରୀ' 'ଜୀବନ
ସଂଗୀତ' ରଚନା କରି ।୩।

କାନ୍ତ କବି ପଦେ ଭୂଷିତ ହୋଇଣ
ସାରସ୍ୱତ ଜଗତରେ
ଖ୍ୟାତିଲାଭ କଲ ସମଗ୍ର ଉତ୍କଳ
ବାସୀଙ୍କର ନିକଟରେ ।୪।

ଫେବୃଆରୀ ମାସ ତାରିଖ ଚବିଶ
ଉଣେଇଶ ତେପନରେ
ଅଫେରାଇଙ୍କେ ଚାଲିଗଲ ସିନା
ସ୍ମୃତି ତୁମ ଉତ୍କଳରେ ।୫।

ଚିର ସ୍ମରଣୀୟ ହୋଇ ରହିଥିବ
ସମଗ୍ର ଜନ ମାନସେ

## ଗୁରେଇର ଚିଠି

ଆହେ ଲକ୍ଷ୍ମୀକାନ୍ତ ତବ ଶ୍ରେଷ୍ଠ କୃତି
'ଜୀବନ ସଂଗୀତ' ରସେ ।୬।
ବାଣୀ ବରପୁତ୍ର ଆହେ ଲକ୍ଷ୍ମୀକାନ୍ତ
ଧନ୍ୟ ତୁମର ସର୍ଜନା
ଯେତେ ଦିନ ଥିବ କାବ୍ୟ କୃତି ତୁମ
ପାଇବ ପୂଜା ଅର୍ଚ୍ଚନା ।୭।





# ଉତ୍କଳମଣି ଗୋପବନ୍ଧୁ

ଦରିଦ୍ରର ବନ୍ଧୁ ଥିଲ ଗୋପବନ୍ଧୁ
ଓଡ଼ିଶା ରାଜ୍ୟର ଗାନ୍ଧୀ
ଅବର୍ତ୍ତମାନରେ ତୁମ ଉତ୍କଳରେ
କେତେ କିଏ ମରେ କାନ୍ଦି ॥୧॥
କିଏ ସେ ବୁଝିବ ଦୀନ ଦୁଃଖି ଦୁଃଖ
ବଢ଼ି ଓ ମରୁଡ଼ି ବେଳେ
କିଏ ବା ବୁଝିବ ଅନ୍ତର ବେଦନା
ସାହା ହେବ ତତ୍‌କାଳେ ॥୨॥
ଋଣଗ୍ରସ୍ତ ଚାଷୀ ଆତ୍ମ ହତ୍ୟା କରେ
ଫସଲ ହେବାରୁ ନଷ୍ଟ
ନିଜ ସ୍ୱାର୍ଥ ପାଇଁ ସର୍ବେ ଏଠି ବାଇ
କେ ବୁଝିବ କାହା କଷ୍ଟ ॥୩॥
ବେକାର ସମାସ୍ୟା ଦନୁ ଦିନ ବଢ଼େ
ଅତିଷ୍ଟ ଅଭାବୀ ଜନେ
ଗାଡ଼ି ଘୋଡ଼ା କୋଠା ବିଭିନ୍ନ ସହରେ
କରେ କିଏ କଳା ଧନେ ॥୪॥
ତୁମର ନାଆଁରେ ତୁମ ଆଦର୍ଶରେ
ଚାଲେ କେବଳ ଭାଷଣ
ପ୍ରତିଶ୍ରୁତି ଦେଇ ପ୍ରବଂଚନା କରି
ଶାସକ କରେ ଶୋଷଣ ॥୫॥
ସତୁରି ବର୍ଷର ସ୍ୱାଧୀନତା ପରେ
ଦରିଦ୍ର ଆଜି ଓଡ଼ିଶା
ଅନ୍ୟ ରାଜ୍ୟେ ଯାଇ ଦାଦନ ଖଟନ୍ତି
ନାହିଁ କେ ସାହା ଭରସା ॥୬॥

ଆଜି ବି ମିଳୁନି ଦାନା, କନା ଆଉ
ଔଷଧ ଟିକିଏ ରୋଗେ
ରାସ୍ତାଘାଟ ଆଉ ପାନୀୟ ଅଭାବେ
ମୃତ୍ୟୁ ଯନ୍ତଣା କେ ଭୋଗେ ॥୭॥
ଛୁରିଅନା ଆଉ ବକୁଳ ବନର
ତୁମ ବନ ବିଦ୍ୟାଳୟ
ଅଶ୍ରୁଳ ନୟନେ ତୁମରି ବିହୁନେ
ନିରିମାଖୀ ନିରାଶ୍ରୟ ॥୮॥
କାହିଁ ସେ ସମୟ ଯାଇଛି ବଦଳି
ସବୁ ବିପରିତ ହୁଏ
ତୁମଭଳି ଆଜି ନିଃସ୍ୱାର୍ଥବାଦୀ
ଜନ୍ମ ହେବ ଆଉ କିଏ ? ॥୯॥
ଜ୍ଞାନୀ, ଗୁଣୀ, କବି,ରାଜନେତା ଆଦି
ଅଛନ୍ତି ଆଜି ଅନେକ
ଅନୀତି ଦୁର୍ନୀତି ପଥର ପଥିକ
ସବୁ ସ୍ୱାର୍ଥବାଦୀ ଲୋକ ॥୧୦॥
ରଚିଅଛ ବହୁ କାବ୍ୟ ଓ କବିତା
ମାନବୀୟ ଗୀତିଗାଥା
ସତ୍ୟ, ନ୍ୟାୟ, ଧର୍ମ, ସ୍ୱରାଜ୍ୟ, ଶାସନ
ସମାଜ ସେବାର କଥା ॥୧୧।
'ଧର୍ମପଦ' 'କାରା କବିତା' ଆବର
'ବନ୍ଦୀର ଆତ୍ମ କଥା'
'ଅବକାଶ ଚିନ୍ତା' 'ଗୋ ମାହାତ୍ମ୍ୟ' ଆଦି
ଉପଖ୍ୟାନ 'ନଚିକେତା' ॥୧୨॥
ମହାର୍ଘ ସଂପଦ ଅଟେ ସବୁ କିଛି
ଉତ୍କଳ ବାଣୀ ଭଣ୍ଡାରେ
କାଳଜୟୀ ସୃଷ୍ଟି ପ୍ରାଣବନ୍ତ ଭାଷା
ସୁଶବ୍ଦ ସଂଯୋଜନାରେ ॥୧୩॥

ହେ ପରମ ବନ୍ଧୁ, ଦୁଃଖୀ ପ୍ରାଣବନ୍ଧୁ
ଓଡ଼ିଶାର ପ୍ରିୟ ନେତା
କବି, ସାମ୍ବାଦିକ, ସମାଜ ସେବକ
ଝୁରେ ଉତ୍କଳ ଜନତା ॥୧୪॥

ଫେରି ଆସ ପୁଣି ହେ ଉତ୍କଳମଣି
ପୁନରପି ନିଅ ଜନ୍ମ
ତୁମ ଉପସ୍ଥିତି ଆବଶ୍ୟକ ଅତି
ଅଧୁରା ତୁମରି କର୍ମ ॥୧୫॥



ଗୁରେଇର ଚିଠି

# ଶିକ୍ଷକ କବି

# ପଣ୍ଡିତ ନିଳକଣ୍ଠ

ବନ ବିଦ୍ୟାଳୟ 'ଶିକ୍ଷକ କବି' ହେ
ସୁ ପଣ୍ଡିତ ନିଳକଣ୍ଠ
'ସତ୍ୟବାଦୀ ଯୁଗ' ସାହିତ୍ୟ ସ୍ରଷ୍ଟା ହେ
ସଂସ୍କାରକ କବି ଶ୍ରେଷ୍ଠ ।୧।

ସମାଜ ସଂସ୍କାର ଜାତୀୟତା ବୋଧ
ଦେଶ ପ୍ରୀତି ଜନସେବା
ଜନଜାଗରଣ ଆଭିମୁଖ୍ୟ ଥିଲା
ଜନତାକୁ ଶିକ୍ଷା ଦେବା ।୨।

ସତ୍ୟବାଦୀର ସେ ବକୁଳବନର
ଛୁରିଅନା କୁଞ୍ଜ ଆଜି
'ଗୁପ୍ତ ବୃନ୍ଦାବନ' ଡାକେ ଫେରିଆସ
ପଥ ପ୍ରଦର୍ଶକ ସାଜି

ଡାକେ 'କୋଣାରକ' ଡାକେ 'ଖାରବେଳ'
ଆସ ଡାକେ 'ପ୍ରଣୟିନୀ'
ଡାକୁଛି 'ମୋନିଶ' ବାରେ ଫେରିଆସ
ନବ ଭାରତର ମୁନୀ ।୪।

ନିଶ ଆନ୍ଦୋଳନେ ସମାଜ ସଂସ୍କାର
କରିବାକୁ କଲ ଚେଷ୍ଟା
ପ୍ରତିଭା ପୂଜା ଓ ପ୍ରତିମା ପୂଜାର
ଶିକ୍ଷା ଦେଲ ଦୂରଦ୍ରଷ୍ଟା ।୫।

କବି ଦାର୍ଶନିକ ଶିଶୁ ସାହିତ୍ୟିକ
ସମାଲୋଚକ ଆବର
ସୁଲେଖକ ଭାବେ 'ଆତ୍ମ ଚରିତ'ରେ
ପ୍ରାପ୍ତ କେନ୍ଦ୍ର ପୁରସ୍କାର ।୬।

# ଗୁରେଇର ଚିଠି

ଉତ୍କଳ ସାହିତ୍ୟ ଏକାଡେମୀର ହେ
ପ୍ରାଥମିକ ସଭାପତି
ଘେନ ହେ ପ୍ରଣତୀ ଉତ୍କଳବାସୀଙ୍କ
ଜ୍ଞାନୀ, ଗୁଣୀ, ମହାମତି ।୭।

ଉତ୍କଳ ମାତାର ସୁଯୋଗ୍ୟ ସନ୍ତାନ
ହେ ପୂଜ୍ୟ ବରେଣ୍ୟ କବି
ଜନ୍ମ ଦିବସରେ ସ୍ମରଣ କରୁଛୁ
ତବ ଗୁଣାବଳୀ ଭାବି ।୮।

ଦିଅ ହେ ଆଶିଷ, ଓଡ଼ିଶାବାସୀଙ୍କୁ
ଅମରପୁରରୁ ଡ଼ାକି
ଜଗନ୍ନାଥ ଧର୍ମ ମହା ଆଦର୍ଶରେ
ଭେଦଭାବ ଯାନ୍ତୁ ଭୁଲି ।୯।



# ଅକ୍ଷୟ ତୁମ କୀରତି

ବାଣୀବର ପୁତ୍ର, ସଂଗୀତ ସମ୍ରାଟ
ଉତ୍କଳ ଗଗନ ରବି,
ସୃଷ୍ଟି କଲ ନବ ସଂଗୀତ ବିଭବ
ହେ ଶ୍ରେଷ୍ଠ ଗାୟକ କବି ।୧।
କ୍ଷୟ ହେଲା ସିନା ଶରୀର ତୁମର
ଅକ୍ଷୟ ତୁମ କୀରତି
ସାର୍ଥକ କରିଛ ନାମ ଓ ଜନମ
ପୂଣ୍ୟାତ୍ମା ହେ ମହାମତି ।୨।
ସୁଲଳିତ କଂଠ ମୋହନ ମୂରଲୀ
ସଂଗୀତ ପ୍ରେମୀ ରାଧିକା,
ମୋହି ହେଉଥିଲେ, ଯେତେ ବି ଶୁଣିଲେ
ଶୁଣିବା ପାଇଁ ଅଧିକା ।୩।
'ନାଉରିଆ ଗୀତ' ସୁରେ ସୁରେ ତୁମ -
ଭାଷେ ସଂଗୀତ ଲହରୀ
ପ୍ରତେ ହୁଏ ସତେ ରହିଛ ମରତେ
ଯଥା ଜାଗ୍ରତ ପ୍ରହରୀ।୪।
ଭାରତର ଶ୍ରେଷ୍ଠ ଗାୟକ ଗାୟିକା
ମହମ୍ମଦ୍ ରଫି, ଲତା
ସମ, ସମକକ୍ଷ ଥିଲ ଓଡ଼ିଶାରେ
ହେ ସଂଗୀତ ବିଦ୍ୱତା ।୫।
ବନର ଶେଫାଳୀ ସମଗଲ ଝରି
ସୁବାସ ବିତରି ବନେ
ପୂଜାଫୁଲ ହୋଇ ମଣ୍ଡି ହେଲ ନାହିଁ
ଠାକୁର ମଥାରେ ଦିନେ ।୬।

ବୁଝିଲେନି ତୁମ ମହତ୍ୱ ଅସୀମ
ଦେଶ ବଡ଼ପଣ୍ଡାମାନେ
ପ୍ରାପ୍ୟଥିଲା ଯେଉଁ ପୂଜ୍ୟପୂଜା ତୁମ
ପାଇ ପାରିନ ଜୀବନେ ।୭।

ଓଡ଼ିଶାର ଜନ ମାନସରେ ତୁମ
ସଂଗୀତ ସୁର ମୂର୍ଚ୍ଛନା
ରହିଥିବ ସଦା ଅମ୍ଳାନ ଭାସ୍ୱର
ପାଇବ ପୂଜା ଅର୍ଚ୍ଚନା।୮।

ତୁମ ଶୂନ୍ୟସ୍ଥାନ ରହିବ ଅପୂର୍ଣ୍ଣ
ସଂଗୀତର ସାମ୍ରାଜ୍ୟରେ
ବରଷ ଆଶିଷ ତୁମ ପ୍ରିୟ ଶିଷ୍ୟ
ଖ୍ୟାତି ଲଭନ୍ତୁ ରାଜ୍ୟରେ ।୯।

ତୁମରି ସ୍ମୃତିରେ ନୟନର ନିରେ
ବିଭୁଙ୍କୁ କରୁ ଜଣାଣ
ଜନ୍ମ ଲଭ ପୁଣି ଉତ୍କଳ ଜନନୀ
କୋଳକୁ କର ମଣ୍ଡନ ।୧୦।



## ପ୍ରିୟବନ୍ଧୁ ଦୁଃଖିଶ୍ୟାମ ଦାସ



ଜନ୍ମ ଓ ମରଣ ସତ୍ୟ ଚିରନ୍ତନ
ସୃଷ୍ଟି ସ୍ଥିତି ଲୟ ସମ
ସମୟର ଚକ୍ର ଘୂରୁଛି ନିରତ
ବିଚିତ୍ର ବିଧି ନିୟମ ।୧।

ଅନେକ ଜନ୍ମର ପୁଣ୍ୟ ଫଳେ ଜୀବ
ମାନବ ଜନ୍ମ ଲଭେ
ପୂର୍ବ ଜନ୍ମାର୍ଜିତ କୃତ କର୍ମ ଫଳ
ଭୋଗ କରେ ଏହି ଭବେ ।୨।

ଅଭିନୟ ମଂଚ ଅଟେ ଏ ଜଗତ
ଅଭିନେତା ଅଟେ ଜୀବ
ସାରି ନିଜ ନିଜ ଅଭିନୟ ସର୍ବେ
ଫେରିଯାନ୍ତି ପୂର୍ବ ଠାବ ।୩।

ଫେରନ୍ତି ସରବେ କାଳବଳେ ଦିନେ
ତଥାପି ମଣିଷ ଝୁରେ
ସ୍ନେହ, ମମତା ଓ ମୋହ, ମାୟା ଭୁଲି
ନ ପାରି ବିକଳେ ସୁରେ ।୪।

ଉଚ୍ଚଶିକ୍ଷା ଲଭି ଉଚ୍ଚ ଆସନରେ
ହୋଇଥିଲ ଅଧିଷ୍ଠିତ
ଉଚ୍ଚ ଆଦର୍ଶରେ ଜୀବନ ବିତାଇ
ସମାଜରେ ପ୍ରତିଷ୍ଠିତ ।୫।

ଅପଦେବତାର ଅଭିଶାପେ ଅବା
ଜନ୍ମିଥିଲ ମର୍ତ୍ତ୍ୟପୁରେ
ଶେଫାଳୀର ସମ ସୁରଭିତ କରି
ଝରିଗଲ ଅକାଳରେ ।୬।

ପତ୍ନୀ, ପୁତ୍ର ସହ ପରିବାର ଜନ
ସମସ୍ତଙ୍କୁ କରି ଦୁଃଖୀ
ଶୋକ ସାଗରରେ ଭସାଇ ସବୁଙ୍କୁ
କରିଗଲ ନିରିମାଖି ।୭।

ଅବର୍ତ୍ତମାନରେ ତୁମ, ନୈରାଶ୍ୟରେ
ମନରେ ବିତୃଷ୍ଣା ଯାଗେ
ଦୁଃଖିଶ୍ୟାମ ବାବୁ, ତୁମ ପରି ସ୍ନେହୀ
ମଣିଷ ବିରଳ ଭବେ ।୮।

ଶିକ୍ଷା, ସାହିତ୍ୟରେ, ଅତୀବ ଦକ୍ଷତା
ଥିଲା ତୁମ ଜୀବନରେ
'ଦାରୁଭୁତ' ଚିର ରଖିବ ଅମର
ତୁମ ଅବର୍ତ୍ତମାନରେ ।୯।

ତୁମ ବାଟେ ତୁମେ ଚାଲିଗଲ ସିନା
'ପ୍ରିୟବଂଧୁ' କର୍ମସାରି
ନୟାଗଡ଼ବାସୀ ସଦା ଓ ସର୍ବଦା
ତୁମ ଗୁଣ ହେବେ ଝୁରି ।୧୦।

ବଡ଼ନୁହେଁ ଧନ, ବଡ଼ ଅଟେ କର୍ମ
ସମାଜଙ୍କୁ ଶିକ୍ଷା ଦେଇ
ଅତୀବ ସରଳ ନିରାଡ଼ମ୍ବର
ଜୀବନ ଅଛ ବିତାଇ ।୧୧।

ଦ୍ୱାଦଶାହ ଶ୍ରାଦ୍ଧ ସ୍ମୃତି ସ୍ମାରକୀର
ପୂଣ୍ୟ ଅବସରେ ଆଜି
ସଦ୍‌ଗତି ଲଭୁ ଆତ୍ମା ଏତିକି
କାମନା, ନିର ବରଜି ।୧୨।

ପ୍ରଭୁ ଦୟାମୟ ହୁଅନ୍ତୁ ସହାୟ
ତୁମ ପରିବାର ଜନେ
ଧୈର୍ଯ୍ୟ ଓ ସାହାସ ଲଭନ୍ତୁ ଅଶେଷ
ବଂଚିବାକୁ ଖୁସି ମନେ ।୧୩।

# ମାଟିର କବି
# ଲୋକନାଥ ମିଶ୍ର(ଭରଦ୍ୱାଜ)

ନୟାଗଡ଼େ ଶ୍ରେଷ୍ଠ ରଘୁନାଥ ପୀଠ
ଓଡ଼ଗ୍ରାମ ଉତ୍ତରରେ
ଊଣିସିଶ ଶତ ତିରିଶି ମାର୍ଚ୍ଚ
ମାସ ପଞ୍ଚ ଦଶକରେ ।୧।

ପିତା ଗୋପିନାଥ ମାତା ମୋ ସେବତୀ
କୋରପିଠା ଗ୍ରାମେ ଜନ୍ମ
ଦୁର୍ବଳ ଶରୀର କ୍ଷୁଦ୍ର କଳେବର
ତେଣୁ ମୋ "ଛୋଟିଆ" ନାମ ।୨।

ତିନି ଭଗ୍ନୀ ତିନି ଭ୍ରାତା ସହୋଦର
ଥିଲେ ମୋ ବାଲୁତ କାଳେ
ପାଳିଥିଲେ ପିତା ଅତୀବ କଷ୍ଟରେ
ସ୍ୱଳ୍ପ ଭୂମି କୃଷି ବଳେ ।୩।

ଖଲିକୋଟ ରାଜବଂଶ ସଂଗେ ଆସି
ପୂର୍ବେ ପୁରୋହିତ ଭାବେ
ତିନିବାଟି ଜମି ତ୍ରିଂସହାତ ଗୃହ
ନିଷ୍କର ଭୋଗ ସଂଭବେ ।୪।

ଅଶ୍ୱିନୀ ମେଷ ମୋ ଜାତକର ଲଗ୍ନ
ବୁଗୁଡ଼ା ମୋ ଅଜାଘର
"ଲୋକନାଥ" ନାମ ଦେଇଥିଲେ ପିତା
ଅଜା ମୋ ଜାତକ କାର ।୫।

ବାଲ୍ୟ କାଳେ ବହୁ ଅଭାବ ଓ ଅନା-
ଟନେ, କଟିଥିଲା କାଳ

ଏକାଦଶ ପରେ ଡ଼ୋରି ବନ୍ଧା ହୋଲା
ଅର୍ଥାଭାବ ଥିଲା ଆଳ ।୬।
କବି ହୋଇବାର ଇଚ୍ଛା ଥିଲା ମୋର
ହୃଦୟେ ବାଲୁତ କାଳୁ,
ଉଣିସିଶ ଚଉଷଠିରେ ଆରମ୍ଭ
ପିତା ତୀରୋଧାନ ବେଳୁ ।୭।
ପ୍ରଭୁ ରଘୁନାଥ କୃପାର ସାଗର
କରୁଣାର ଅବତାର
କୃପା କଣିକାରୁ କବିତା ଲେଖୁଛି
କବିରେ ପ୍ରସିଦ୍ଧି ମୋର ।୮।
'ପ୍ରଭୁ ରଘୁନାଥ ଭଜନ ମାଳା' ଓ
'ଶ୍ରୀ ରଘୁନାଥ ଭଜନ'
କ୍ଷୁଦ୍ର କାବ୍ୟ 'ମନ ମରାଳ ଝୁରେ' ଓ
'ଉର୍ବଶୀ' କାବ୍ୟ ସମ୍ପୂର୍ଣ୍ଣ ।।୯।।
ଶିଶୁ ସଂକଳନ 'ଆ ଜହ୍ନ ମାମୁଁ'
ବ୍ୟଙ୍ଗ ସଂକଳନ ରଚି
ସମାଲୋଚନା ମୂଳକ ବ୍ୟଙ୍ଗ ସୃଷ୍ଟି
"ଏଠି, ସବୁ ଚଳିବାକୁ"ସଞ୍ଚି ।।୧୦।।
ଅନ୍ୟ ଏକ କାବ୍ୟ 'ଜୀବନ-ଜ୍ୱଳନ'
ଗାଥା କବିତା ଆବର
'ନିଃସଂଗ କୌଞ୍ଚ' ମାନବିକ ମୂଲ୍ୟ
ବୋଧ କବିତାରେ ସାର ।।୧୧।।
'ଉତ୍କଳୀୟ ଶୈବ ଉପାସନା' ଦଣ୍ଡ-
ନୃତ୍ୟ ଏବଂ ଝାମୁଯାତ୍ରା
'ଶୀତଳ ଷଷ୍ଠୀ' ପ୍ରବନ୍ଧ ସଂକଳନ
ରଚି ଖୁସି ଅତି ମାତ୍ରା ।।୧୨।।
ପତ୍ନୀ ମୋ ଉର୍ବଶୀ ହେଲେ ସ୍ୱର୍ଗବାସୀ
ଚୌରାନବେ ମସିହାରେ

ନିଃସଙ୍ଗ ଜୀବନ ବିତାଏ ସେଦିନୁ
ରଘୁନାଥ ଚିନ୍ତନରେ ॥୧୩॥
ଏକ କନ୍ୟା ଦୁଇ ପୁତ୍ର ସନ୍ତାନ ମୋ
ଅଛନ୍ତି ସୁଖ ଦୁଃଖରେ
ଉଚ୍ଚଶିକ୍ଷା ପାଇ ଉଚ୍ଚ ପଦବୀରେ
ପ୍ରତିଷ୍ଠିତ ସମାଜରେ ॥୧୪॥
ଜୟ ଜଗନ୍ନାଥ ଜୟ ରଘୁନାଥ
ଜୟ ଜୀବନ କାରଣ
ଜୟ ବ୍ରହ୍ମା, ବିଷ୍ଣୁ, ଜୟ ଶିବଶମ୍ଭୁ
ଭବାବ୍ଧିକର ତାରଣ ॥୧୫॥



# ସମ୍ବର୍ଦ୍ଧନା ମାନପତ୍ର

୧. ସୃଷ୍ଟି ଓ ସ୍ରଷ୍ଟା ସାଂସ୍କୃତିକ ଅନୁଷ୍ଠାନ, ଉମରକୋଟ, ନବରଙ୍ଗପୁର ସମ୍ବର୍ଦ୍ଧନା ମାନପତ୍ର ପ୍ରାପ୍ତ।

୨. କବିତା କଳ୍ପଲତା ସମ୍ମାନ ୧୯୯୬ ।ଅରୁଣୋଦୟନଗର, କଟକ

୩. ଏକାକାର ସାହିତ୍ୟ ସଂସଦ, ବନ୍ଧମୁଣ୍ଡା, ଜଗତସିଂହପୁର ସମ୍ମାନିତ ବକ୍ତା। ସମ୍ବର୍ଦ୍ଧନା ମାନପତ୍ର ପ୍ରାପ୍ତ।

୪. ଓଡ଼ିଶା ସୁ ସାହିତ୍ୟ ଅନୁଷ୍ଠାନ ପାଣିକୋଇଲି,ଯାଜପୁର ମୁଖ୍ୟବକ୍ତା, ସମ୍ବର୍ଦ୍ଧନା ମାନପତ୍ର ପ୍ରାପ୍ତ।

୫. ଖଇରା ସାହିତ୍ୟ ସଂସଦ, ଖଇରା ବାଲେଶ୍ୱର। ମୁଖ୍ୟବକ୍ତା, ସମ୍ବର୍ଦ୍ଧନା ମାନପତ୍ର ପ୍ରାପ୍ତ।

୬. ବନଜ୍ୟୋତ୍ସ୍ନା ସାହିତ୍ୟ ସଂସଦ, ମାଷ୍ଟରପଡ଼ା, ଫୁଲବାଣୀ- ବନଜ୍ୟୋତ୍ସ୍ନା ସାରସ୍ୱତ ସମ୍ମାନ ୧୯୯୭ (ଶ୍ରେଷ୍ଠ କବିତା "ଜୀବନ")

୭. ବିଭାବନା, ଏତଲା ସାରସ୍ୱତ ସମାରୋହ, ଢେଙ୍କାନାଳ ସମ୍ବର୍ଦ୍ଧନା ମାନପତ୍ର ପ୍ରାପ୍ତ।

୮. ବାସନ୍ତୀ କୃତିତ୍ୱ ଓ ପ୍ରଶଂସା ପତ୍ର ରାଜ୍ୟସ୍ତରୀୟ କବିତା ଓ ଗଳ୍ପ ପ୍ରତିଯୋଗୀତା-୨୦୦୦, ସୂଚଘର ଭବନ, ଭୁବନେଶ୍ୱର

୯. ଚଲାପଥ ରାଜ୍ୟସ୍ତରୀୟ ଲେଖକ ସମ୍ମିଳନୀ, ଭୁବନେଶ୍ୱର

୧୦. ଯଦୁମଣି ସାହିତ୍ୟ ସଂସଦ, ଉଦୟପୁର, ନୂଆଗାଁ। ନୟାଗଡ଼ ମାନପତ୍ର-୧୯୯୬

୧୧. ଅଭିନନ୍ଦନ କବି, ଅଷ୍ଟମ ବାର୍ଷିକ ସାରସ୍ୱତ ସମାରୋହ ୧୯୯୭ ଅଭିନନ୍ଦନ ପତ୍ର।

୧୨.ସୁଲେଖା ସାରସ୍ୱତ ସମ୍ବର୍ଦ୍ଧନା ଓ ରାଜ୍ୟସ୍ତରୀୟ କବି ସମ୍ମିଳନୀ, ପୁରୀ; ୧୯୯୯ ମାନପତ୍ର ପ୍ରାପ୍ତ।

୧୩. ଗାଁ ଗଣ୍ଡା ସାହିତ୍ୟ ସଂସଦ, ମଦନାପୁର ବାଲେଶ୍ୱର ଗାଁ ଗଣ୍ଡା ସାହିତ୍ୟ ସଂସଦ-୨୦୦୦। ସମ୍ମାନିତ ବକ୍ତା

୧୪. ଉତ୍ସବ ପ୍ରଧାନ ପାଟ-୨୦୦୩ ଦେବଗଡ଼ କବି ସମ୍ମିଳନୀ ସମ୍ବର୍ଦ୍ଧନା ମାନପତ୍ର ପ୍ରାପ୍ତ ୨୦୦୩

୧୫. "ପରମ୍ପରା ସମ୍ମାନ", ସାହିତ୍ୟ ଓ ସଂସ୍କୃତି ପରିଷଦ, ନୟାଗଡ଼ ଏବଂ ଆହୁରି ଅନେକ.....





ନୟାଗଡ଼ ଜିଲ୍ଲା ଅନ୍ତର୍ଗତ ଓଡ଼ଗାଁ ନିକଟବର୍ତ୍ତୀ କୋରପିଠା ଗ୍ରାମରେ ୧୯୩୭ ମସିହା ମାର୍ଚ୍ଚ ମାସ ୧୫ ତାରିଖରେ(ଜନ୍ମ ଜାତକ ଅନୁସାରେ) ପିତା ୰ଗୋପିନାଥ ମିଶ୍ର ଓ ମାତା ୰ସେବତୀ ଦେବୀଙ୍କର କୋଳମଣ୍ଡନ କରିଥିଲେ। ଜଣେ ସମାଜସେବୀ, ଲେଖକ, କବି ଓ ଗବେଷକ ରୂପରେ ସମାଜରେ ସେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରି ପାରିଛନ୍ତି। ସଂଘର୍ଷରତ କର୍ମମୟ ଜୀବନ ଓ ଜୀବିକାକୁ ପାଥେୟ କରି ବଞ୍ଚିବାର ମୋହରେ ଅଣନିଃଶ୍ୱାସ କବି ସୃଷ୍ଟି କରିଛନ୍ତି ରାଣି, ରାଣି କାବ୍ୟ, କବିତା, ଭଜନ, ଜଣାଣ ଏବଂ ପ୍ରବନ୍ଧ ତଥା କ୍ଷୁଦ୍ର ଗଳ୍ପ ଇତ୍ୟାଦି। କବିଙ୍କ ପ୍ରତିଭାରେ ବିମୁଗ୍ଧ ହୋଇ ରାଜ୍ୟର କୋଣ ଅନୁକୋଣରୁ କବିଙ୍କୁ ମିଳିଛି ଅଜସ୍ର ପୁରସ୍କାର। ସରକାରୀ ଚାକିରିରୁ ଅବସର ଗ୍ରହଣ ପରେ କବି ସଂପ୍ରତି ଓଡ଼ଗାଁରେ ସ୍ୱଗୃହ ବାଣୀ ନିକେତନରେ ଅବସ୍ଥାନ କରୁଛନ୍ତି।

ତାଙ୍କ ଦ୍ୱାରା ରଚିତ 'ପ୍ରଭୁ ରଘୁନାଥ ଭଜନ ମାଳା', 'ମନ ମରାଳ ଝୁରେ', 'ଉର୍ବଶୀ', 'ଜୟଶ୍ରୀ ରଘୁନାଥ', 'ଏଠି ସବୁ ଚଳିବ'(ବ୍ୟଙ୍ଗ କବିତା ସଂକଳନ), 'ଜୀବନ ଓ ସୃଜନ', 'ଆ ଜହ୍ନ ମାମୁଁ', 'ଶୈବ ଉପାସନା', 'ନିଃସଙ୍ଗ କ୍ରୌଞ୍ଚ', '[illegible]' ପ୍ରକାଶିତ ହୋଇ ପାଠକ ମହଲରେ ଉଚ୍ଚ ପ୍ରଶଂସିତ। କବିଙ୍କର ଅନେକ ଅନେକ ଉପାଦେୟ ମାନବଧର୍ମୀ କବିତା, ବ୍ୟଙ୍ଗ ଓ ସମାଲୋଚନା ମୂଳକ କବିତା, ଶିଶୁ କବିତା, ଭଜନ ଓ କ୍ଷୁଦ୍ରଗଳ୍ପ ପ୍ରଭୃତିର ପାଣ୍ଡୁଲିପି ପ୍ରକାଶ ଅପେକ୍ଷାରେ। ସ୍ରଷ୍ଟା ମାଟିର କବି ଲୋକନାଥ ମିଶ୍ର(ଭରଦ୍ୱାଜ)ଙ୍କ -୨୦୨୦ର ଶ୍ରେଷ୍ଠ କବିତା ସମ୍ଭାର "[illegible]" ସରଳ ସାବଲିଳ ଭାଷାରେ ନିଖୁଣ ଚିତ୍ର ପ୍ରଦାନ କରି ମନଛୁଆଁ ହୋଇ ପାରିଛି।



ପ୍ରକାଶକ



ମୁଦ୍ରଣ-ଜଗନ୍ନାଥ ପ୍ରିଣ୍ଟିଙ୍ଗ୍ ପ୍ରେସ୍, ଶରଣକୁଳ, ନୟାଗଡ଼ ମୋ-୯୮୫୩୨୫୨୮୪୩, ୭୦୦୮୫୯୨୮୭୧